## ଯୌବନ-ବିବାହ କି କୃତାର୍ଥ ହୁଏ କେଉଁଠାରେ—?

ଯୌବନ-ବିବାହକୁ ଯଦି ସମର୍ଥନ କରାଯାଏ, ତେବେ ଜଣେ ପୁରୁଷ ଓ ଚାରି ପାଞ୍ଚ ଜଣ ନାରୀ କିମ୍ବା ଚାରି ପାଞ୍ଚ ଜଣ ପୁରୁଷ ଓ ଜଣେ ନାରୀଙ୍କ ମଧ୍ୟରେ ହିଁ ବିବାହ ହେବା ଅଧିକ ଯୁକ୍ତି-ସଂଗତ। ଏଣୁ ମଧ୍ୟ ଯେଉଁ ସବୁ ସ୍ଥାନରେ ନାରୀ କିମ୍ବା ପୁରୁଷର ସଂଖ୍ୟା ଅପେକ୍ଷାକୃତ କମ୍, ସେଠାରେ ବହୁପ ବିବାହପ୍ରଥା ପ୍ରଚଳିତ। ଏହି ପ୍ରଥାଦ୍ୱାରା ଜଣେ ପୁରୁଷକୁ ଅଧିକ ପ୍ରେମ କରିବାକୁ ବହୁ ସ୍ତ୍ରୀଙ୍କ ମଧ୍ୟରେ ଯେପରି ପ୍ରତିଯୋଗିତା ହୁଏ, ଅନ୍ୟ ପ୍ରଥାଦ୍ୱାରା ଜଣେ ପତ୍ନୀ ପ୍ରତି ସେହିପରି ବହୁ ସହ-ସ୍ୱାମୀଙ୍କର ପ୍ରତିଦ୍ୱନ୍ଦ୍ୱିତା ସମ୍ଭବ। ଅତଏବ ପ୍ରେମର ରଙ୍ଗ ଏବଂ ଯେଉଁ ଟଗ୍-ଅ-ୱାର୍ ଆରମ୍ଭ ହୁଏ, ସେଥିରେ ଯୌବନରେ ବିବାହ କଲେ ମଧ୍ୟ ତାହା କ୍ଷଣସ୍ଥାୟୀ ହେବାର ସମ୍ଭାବନା ଅଛି ନିଶ୍ଚୟ।

## ବୟସ୍କ ବିବାହର ସୁବିଧା—

ତାହା ନ ହେଲେ ନିର୍ବୋଧ ବାଲ୍ୟବିବାହ ନ କରି ଯୌବନ ପାର ହୋଇ ତିରିଶ ପଞ୍ଚାଳିଶ ବର୍ଷରେ ବିବାହ କରିବାକୁ ଅନେକଙ୍କର ମତ ହେଉଛି ଯେ, 'ଅବଶ୍ୟ ବେଶି ବୟସରେ ବିବାହ କଲେ ଅନେକ ସୁବିଧା ସୁଯୋଗ ଅଛି, ଯାହା ଯୌବନରେ ମିଳେ ନାହିଁ। —କିମ୍ବା ଶୈଶବରେ ଯୋଗାହୁଏ ନାହିଁ— ବିବାହକୁ ସ୍ଥାୟୀ ଓ ସଫଳ କରିବାକୁ ହେଲେ ଦମ୍ପତିଙ୍କୁ ହୁଏ ତ ସମ୍ପୂର୍ଣ୍ଣ ବିବେକବୋଧ ରଖିବାକୁ ହେବ କିମ୍ବା ବିନା ପ୍ରେମରେ ଅଥବା ଅଳ୍ପ ସାମାନ୍ୟ ପ୍ରେମରେ ହିଁ ସନ୍ତୁଷ୍ଟ ରହିବା ଦରକାର— ଏହି ପ୍ରକାର ସୁବିଧାଟି ହିଁ ବୟସ୍କ ବିବାହରେ ମିଳିଥାଏ। ଏହି ବୟସରେ ହିଁ

ଘର ସଂସାର ଢଙ୍ଗରେ ସାଧାରଣତଃ ମନ ବସେ । ସ୍ତ୍ରୀ ପୁରୁଷ ପରସ୍ପରଠାରୁ ଯେଉଁ ସାହାଯ୍ୟ ଓ ଆଶ୍ରୟ ଲୋଡ଼ନ୍ତି, ଏହା ହିଁ ତାହାର ପ୍ରକୃଷ୍ଟ ସମୟ । ଏ ରୂପ ବିବାହ ଦ୍ୱାରା ଦେଶର ଅନାବଶ୍ୟକ ଜନସଂଖ୍ୟା ବୃଦ୍ଧିର ମଧ୍ୟ ସମାଧାନ କରିପାଇ ପାରେ ସହଜରେ; କାରଣ ବୟସଟା ଅଧିକ ହେଲେ ଉତ୍ପାଦନର କ୍ଷମତା ହ୍ରାସ ପାଏ । ଶେଷ ଜୀବନରେ ସନ୍ତାନଦ୍ୱାରା ଭରଣ ପୋଷଣର ଆଶା କମ୍ ଥିବାରୁ ତାହା ଉପରେ ମଧ୍ୟ ଗଳଗ୍ରହ ହେବାକୁ ପଡ଼ିବ ନାହିଁ । ପୁଣି ସନ୍ତାନ ସାବାଳକ ହେବା ଆଗରୁ ଅର୍ଥାତ୍ ପିତାର ଦୋଷ ତ୍ରୁଟି ସେ ଦେଖାଇବା ପୂର୍ବରୁ ସାଧାରଣତଃ ପିତାକୁ ସଂସାରରୁ ବିଦାୟ ନେବାକୁ ହୋଇଥିବ—ସୁତରାଂ ବର୍ତ୍ତମାନ ଅପେକ୍ଷା ସେ ଅବସ୍ଥାରେ ପିତୃଭକ୍ତ ସନ୍ତାନର ସଂଖ୍ୟା ଅଧିକ ହେବ ।

ଆଜି ଯେଉଁମାନେ ଦ୍ୱିତୀୟ ପକ୍ଷ ଓ ତୃତୀୟ ପକ୍ଷର ସ୍ତ୍ରୀ ବିବାହ କରିବା ବାଞ୍ଛାରେ ପରିଣୀତା ପ୍ରଥମ ପତ୍ନୀର ମୃତ୍ୟୁ କାମନା କରନ୍ତି, ସେମାନଙ୍କୁ ହତାଶ ହେବାକୁ ପଡ଼ିବ । ପୁଣି ବରପଣ ବିବାହ ପାଇଁ ଏ ଦେଶରେ ସ୍ଥାନେ ସ୍ଥାନେ ଯେଉଁ ସବୁ ସଂଗଠନ କରା ଯାଇ ଅଛି, ସେ ଗୁଡ଼ିକର ଦଶା ମଧ୍ୟ ଶୋଚନୀୟ ହେବ ।

ଅବଶ୍ୟ ଏତେ ଦୀର୍ଘକାଳ ପର୍ଯ୍ୟନ୍ତ ବିବାହ ଲାଗି ଅପେକ୍ଷା କରିବାକୁ ସବୁ ଯୁବକର ଧୈର୍ଯ୍ୟ ରହି ନ ପାରେ । ଆଉ ମଧ୍ୟ ଉଦ୍ଦାମ ଯୌବନକୁ ସଂଯତ କରିବା ଦିଗରେ ଅନେକଙ୍କ ପକ୍ଷରେ ହୁଏତ ସ୍ତ୍ରୀର ଆବଶ୍ୟକତା ଯଥେଷ୍ଟ ଅଛି । ଅତଏବ ଅଳ୍ପ ବୟସରେ ଯେଉଁମାନେ ବିବାହ ନ କରି ରହି ପାରିବେ ନାହିଁ,

ଗୋଟିଏ କଥା ସେମାନଙ୍କର ଭଲ ରୂପେ ମନେ ରଖିବା ଦରକାର । ଅର୍ଥାତ୍ ଏପରି ଅବସ୍ଥାରେ ସେମାନେ ଯେତେ ପାରନ୍ତି, କନ୍ୟା-କର୍ତ୍ତାଠାରୁ ବରପଣ ଓ କନ୍ୟା-ଯୌତୁକ ଆଦାୟ କରି ନେବା ହିଁ ଶ୍ରେୟସ୍କର । କାରଣ ଏହିଭଳି ପରିସ୍ଥିତିରେ ଯେଉଁ ବିବାହ କରାଯାଏ, ତାହା ଭିତରେ ସବୁଠାରୁ ବେଶି ଦରକାର ଓ ସବୁଠାରୁ ବେଶି ବ୍ୟବହାରରେ ଲାଗେ ବୋଲି ଭଲ କରି ଜଣାପଡ଼େ ତ ତାହା ହେଉଛି ଏହି ଯୌତୁକ ବା ବରପଣ ।

## ତରୁଣର ଅର୍ଥ ସମସ୍ୟା—

ବନ୍ଧୁଗଣ ! କ୍ରୀଡ଼ା ଓ କୌତୁକ, ପାଠପଢ଼ା, ପୁଣି ପରୀକ୍ଷା ପାଶ, ବିବାହ ଓ ଅଭ୍ୟାଗତ, ସବୁ ଆପଣମାନେ କରନ୍ତୁ । କିନ୍ତୁ ଗୋଟିଏ କଥା ଭୁଲିଗଲେ ଚଳିବ ନାହିଁ । ମନୁଷ୍ୟର ସବୁ ଅବସ୍ଥାକୁ ଯେଉଁ ବିରାଟ ଶକ୍ତି ନିୟନ୍ତ୍ରିତ କରୁଛି, ପୃଥିବୀର ଶତକଡ଼ା ଅନେକ ଭାଗ ଚିନ୍ତା ଓ କାର୍ଯ୍ୟକୁ ଯେଉଁ ଶକ୍ତି ଦ୍ୱାରା ଚଳାଇ ଦିଆଯାଏ —ତାହା ହେଉଛି ଅର୍ଥ । ଧର୍ମମତ, ରାଜମତ, ସାମ୍ୟବାଦ ସାମ୍ରାଜ୍ୟବାଦ, ଯୁଦ୍ଧ ବା ବିଗ୍ରହ ପ୍ରଭୃତି ରାଷ୍ଟ୍ରୀୟ ଓ ଜାତୀୟ ବିଷୟଠାରୁ ଆରମ୍ଭ କରି ବ୍ୟକ୍ତିଗତ ପ୍ରତି ମାନବର ଜୀବନ ମଧ୍ୟ ଏହାକୁ ହିଁ କେନ୍ଦ୍ର କରି ଗତି କରୁଛି । ପୃଥିବୀର ହତ୍ୟା ଓ ବ୍ୟଭିଚାର, ଦାନ ଓ ଧର୍ମ, ଇତିହାସ ଓ ବିଜ୍ଞାନ, ବନ୍ଧୁ ଓ ଶତ୍ରୁ ସମସ୍ତ ହିଁ ଏହି ଅର୍ଥ ସମସ୍ୟା ମଧ୍ୟରେ ସଂଶ୍ଳିଷ୍ଟ । କିନ୍ତୁ ଏ ମହା ସମସ୍ୟାର ସମାଧାନ ପାଇଁ ଭବିଷ୍ୟତ ସମାଜର ବିଶ୍ୱକର୍ମା ରୂପେ ତରୁଣ କଣ କରେ ? ମୋର ମନେ ହୁଏ, ଏ ପ୍ରଶ୍ନର ସିଧା ସଳଖ ଉତ୍ତର ହେବ —ଗୃହକୁ ଲୋଡ଼େ । ଆଉ କେତେ ଜଣଙ୍କ ପାଇଁ ଗୃହକୁ ଦ୍ୱାର ଉନ୍ମୁକ୍ତ ? ସମଗ୍ର ତରୁଣ ସମାଜର ସମସ୍ୟାର

ସେଥିରେ ମୀମାଂସା ହୁଏ କି ? ଗୃହକରର ସମସ୍ୟା, ଉପାର୍ଜନର ସମସ୍ୟା , କେବଳ ଏହି ଦେଶର ନୁହେଁ , ବନ୍ଧୁଗଣ ! ଏହା ସମଗ୍ର ପୃଥିବୀବ୍ୟାପୀ । ଏହାର ମୀମାଂସା ଲାଗି ରୁଜ୍‌ଭେଲ୍‌ଟ ନିଉଡିଲ୍ କାଢ଼ିଛନ୍ତି ଓ ଲୟେଡ୍ ଜର୍ଜ ତାହାର ଆବୃତ୍ତି କରଛନ୍ତି, ମୁସୋଲିନ୍ ଆବସିନିଆକୁ ସ୍ୱସତ୍ୱ କରଛନ୍ତି କିମ୍ବା ହିଟ୍‌ଲରର ଯୁଦ୍ଧରଙ୍ଗ ଶୁଣିବେ ନାହିଁ ବୋଲି ମତ୍‌ଲପ ଆଣ୍ଟିଚନ୍ତି ; ଯୁଗୋସ୍ଲାଭିଆର ରାଜା ଓ ଅଷ୍ଟ୍ରିଆର ଡିକ୍‌ଟେଟରଙ୍କୁ ମସ୍ତକ ଦେବାକୁ ହୋଇଛି । ଜାପାନ ବଜାର ଦର ଶସ୍ତା କରୁଚି କିମ୍ବା ଭାରତ ସରକାର ବେଶି ସଂଖ୍ୟାରେ ମନ୍ତ୍ରୀ ନିଯୋଗ କରୁଚନ୍ତି ; କିନ୍ତୁ ଯାହାପାଇଁ ଏତେ ଆୟୋଜନ ସେ ଏ ସମ୍ବନ୍ଧରେ ଚିନ୍ତା କରେ କି ? ଯଦି କରେ , ତେବେ ତାହା ସମାଜ ଓ ରାଷ୍ଟ୍ର ଦୃଷ୍ଟିରୁ , କିମ୍ବା ନିଜର ବ୍ୟକ୍ତିଗତ ସୁବିଧା ପାଇଁ ? ସାମାଜିକ ଓ ରାଷ୍ଟ୍ରିକ ସମାଧାନ ନ ହେବାଯାଏ ବ୍ୟକ୍ତିର ସମାଧାନ ସମ୍ଭବ କି ?

ବ୍ୟଷ୍ଟି ଓ ସମଷ୍ଟିର ସବୁ ସୂତ୍ର , ସବୁ ସମ୍ବନ୍ଧ ବୁଝି ଶିକ୍ଷିତ ତରୁଣ ପକ୍ଷରୁ ଯାହା ଆଶା କରାଯାଏ, ସେ ସବୁ ପୂରଣ କରିବା ପାଇଁ ସେ ଆଜି କେତେ ଦୂର ସମର୍ଥ ହୋଇଛି ? ସମଷ୍ଟି-ଶିକ୍ଷା, ସମଷ୍ଟି-ବିବାହ , ସମଷ୍ଟି-ଉତ୍ପାଦନ ପ୍ରଭୃତି କଥାଗୁଡ଼ିକ ଯୁବକ ପକ୍ଷରେ କଣ ଖାଲି ଶୁକପକ୍ଷୀର ଭାଷା ? ଯେଉଁ ସମାଜ, ଯେଉଁ ଶିକ୍ଷା , ଯେଉଁ ବ୍ୟବସାୟ ଓ ଯେଉଁ ରାଷ୍ଟ୍ର, ପୃଥିବୀର ବହୁ ଓ ସର୍ବାଧିକ ଅଂଶ ପାଇଁ ବାଞ୍ଛନୀୟ , ତାହା ହିଁ ଯେ ସର୍ବାପେକ୍ଷା ଅଧିକ ଯୁକ୍ତିଯୁକ୍ତ , ଏ କଥା ମଧ୍ୟ ଯୁବକର ମସ୍ତିଷ୍କରେ ପୂରାଇ ଦେବାକୁ ହେବ ? ଏ ସବୁ କ୍ଷେତ୍ରରେ ନିଜର ଚିନ୍ତା ଓ କର୍ମ-ଯୋଜନା ପାଇଁ ଭବିଷ୍ୟତର ଯାତ୍ରୀମାନଙ୍କର ଯେଉଁ କର୍ତ୍ତବ୍ୟ ,

ସେଥିଲାଗି ମଧ୍ୟ ସେମାନଙ୍କ ରକ୍ତରେ ଉଷ୍ଣତା ଓ ପ୍ରାଣରେ ଉତ୍ତେ-ଜନା ଦେବା ଦରକାର ?

ମୋହର ବିଶ୍ୱାସ, ଯୁବକ ଅବସ୍ଥାରେ ଇତିହାସ, ଭୂଗୋଳ ସାହିତ୍ୟ, ଦର୍ଶନ, ସ୍ୱାସ୍ଥ୍ୟ ଓ ବିଜ୍ଞାନ ସମ୍ବନ୍ଧରେ ଜାଣିବାକୁ ଆମର ଯେଉଁ ଅଧିକାର ଅଛି, ଯୌନତତ୍ତ୍ୱ, ସମାଜନୀତି ଓ ରାଜନୀତି ବିଷୟରେ ବୁଝିବାକୁ ପୁଣି ନିଜର ପାରିପାର୍ଶ୍ୱିକ ଅବସ୍ଥା ପାଠ କରିବାକୁ ସମାନ ଅଧିକାର ଅଛି । କିନ୍ତୁ ଅଧିକାର ଓ ଦାବୀର ପ୍ରଶ୍ନ ଯେଉଁଠାରେ ଉଠେ, ସେଠାରେ ତାକୁ କେହି କାହାକୁ ଦେଇପାରେ ନାହିଁ । ସେ ସମସ୍ତ ଅଦାୟ କରି ନେବା-କୁହିଁ ହୁଏ । ଏପରି କି ବହୁ କ୍ଷେତ୍ରରେ ଦେଖାଯାଏ, ବାପ ପୁଅକୁ କିମ୍ବା ସ୍ୱାମୀ ସ୍ତ୍ରୀକୁ ମଧ୍ୟ ଅଧିକାର ଦେବାକୁ ରାଜି ନୁହେଁ । ଏ ସବୁ କ୍ଷେତ୍ରରେ ଶକ୍ତିହୀନତା ଓ ସାହସହୀନତା ହେତୁରୁ ମନସ୍ତତ୍ତ୍ୱବିତ୍-ମାନଙ୍କ ଭାଷାରେ ଆତ୍ମଦମନ କରିବାକୁ ହୋଇଥାଏ । କିନ୍ତୁ ଯେତେବେଳେ ଏହି ପ୍ରତିରୋଧର ପ୍ରତିକ୍ରିୟା ଆରମ୍ଭ ହୁଏ, ସେତେ-ବେଳେ ସବୁ କ୍ଷେତ୍ରରେ ବିପ୍ଳବର ସୃଷ୍ଟି ହୁଏ । ତତ୍ତ୍ୱସ୍ପର୍ଶରେ ହିଁ ଆମ୍ଭେମାନେ ପ୍ରତ୍ୟହ କେତେ ବିପ୍ଳବୀଙ୍କୁ ଦେଖିବାକୁ ପାଉଁ । ସେମାନଙ୍କ ଭିତରୁ ଅନେକ ତ୍ୟାଜ୍ୟପୁତ୍ର, ଏକ୍‌ସ୍‌ପେଲ୍‌ଡ, ସମାଜ ଅଥବା ଜାତିଚ୍ୟୁତ, ବିଧର୍ମୀ ବା ବେଆଇନ ଦଳ ଲୁଚେଇ ସବୁ କ୍ଷେତ୍ରରୁ ବିତାଡ଼ିତ, ଅଥଚ ସେମାନଙ୍କୁ ହିଁ ପୁଣି ସମାଜ ଫେରାଇ ଆଣି ଅଭି-ନନ୍ଦନ କରେ । ପ୍ୟାରିମୋହନ ଆଚାର୍ଯ୍ୟ, ବିଶ୍ୱନାଥକର, ମଧୁ-ସୂଦନ ଦାସ ଓ ଗୋପବନ୍ଧୁ ଦାସ ପ୍ରଭୃତି ଏହି କ୍ଷୁଦ୍ର ଓଡ଼ିଶା ପ୍ରଦେଶରେ ମଧ୍ୟ ଏହିରୂପ ସମ୍ମାନ ପାଇ ଅଛନ୍ତି । ଅଥଚ ଧର୍ମ, ସମାଜ ଓ ରାଷ୍ଟ୍ରକୁ ଅଳ୍ପ ବେଶି ସେମାନଙ୍କୁ ବିପ୍ଳବୀ ବୋଲିବାକୁ ହିଁ ହେବ ।

## ଯୁବକର ହେତୁହୀନ ଭୀରୁତା—

କିନ୍ତୁ ବର୍ତ୍ତମାନର ଯୁବକ ବିପ୍ଳବୀ ହେବା ତ ଦୂରର କଥା, ସବୁ କ୍ଷେତ୍ରରେହିଁ ସେ ଆଜି ଗୋଟାଏ ଅହେତୁକ ଭୀରୁତା ଓ ତୁଚ୍ଛ କାପୁରୁଷତାର ପରିଚୟ ଦେଇଅଛି । ପିତା, ଅଭିଭାବକ, ଶିକ୍ଷକ, ଅଧ୍ୟାପକ କିମ୍ବା ଉପରିସ୍ଥ କର୍ମଚାରୀ ସଙ୍ଗେ ତାହାର ଯେଉଁ ସମ୍ପର୍କ ସେ ଯେପରି ଏକ ପୁଲିସ ଏବଂ ଚୋରର ସମ୍ପର୍କ । ଅଥବା କିମ୍ବା ସମାଜର ବିଭିନ୍ନ କ୍ଷେତ୍ରରେ ନାନା ବିଭାଗରେ ଯେଉଁ ଅଳ୍ପ କେତେ ଜଣ ଭାଗ୍ୟବାନଙ୍କର ଦୈବ-କ୍ରମେ କିଛି କ୍ଷମତା ଓ ଅଧିକାର ହୋଇଅଛି, ସେମାନଙ୍କୁ ସେ ଯେପରି ଭୟ କରେ, କୌଣସି ନୂତନ ଚିନ୍ତା ଓ ନୂତନ ପରିବର୍ତ୍ତନକୁ ମଧ୍ୟ ଅଭିନନ୍ଦନ କରିବା ପାଇଁ ସେହିପରି ସେ ଅକ୍ଷମ । ଶୈଶବରୁ ତାହା ଭିତରେ ଯେଉଁ ଭୟ ବା ଭୂତର ପ୍ରବେଶ ହୋଇଥାଏ, ତାହାହିଁ ପରବର୍ତ୍ତୀ ଜୀବନରେ ନାନା ରୂପରେ ପ୍ରକାଶ ଲାଭ କରେ ।

ଏହି ସଙ୍କୋଚ ଓ ଭୀରୁତା ତାହାକୁ ଏପରି ନିବିଡ଼ ଭାବରେ ଗ୍ରାସ କରେ ଯେ ତାହାର ସମସ୍ତ ଶିକ୍ଷା ଓ ଦୀକ୍ଷା ସେଠାରେ ପରାଜିତ । ଜୀବନଟା ତାକୁ ମୃତ୍ୟୁ ଅପେକ୍ଷା ଅଧିକ ଭୀଷଣ ଏବଂ ସତ୍ୟଟା ମିଥ୍ୟା ଅପେକ୍ଷା ବେଶି ଭୟଙ୍କର ବୋଧହୁଏ । ଯଥାର୍ଥରେ ସେ ଭୟ କରେ ଏହି ଜୀବନକୁ, ଏହି ଅତି ବାସ୍ତବ ଓ ଅତି ସତ୍ୟ ଜୀବନକୁ ।

ସେଥିପାଇଁ ତରୁଣ ବନ୍ଧୁଙ୍କର ସବୁ ଅପାର୍ଥିବ କଳ୍ପନା, ସବୁ ଅବାସ୍ତବ ଦୁଶ୍ଚିନ୍ତାର ଆଶ୍ରୟରେ ନିଜକୁ ଘୋଡ଼ାଇ ରଖିବାର ଚେଷ୍ଟା । ସେଇଥିପାଇଁ କାବ୍ୟ କବିତାର ଆଲୋଚନା ଏତେ ପ୍ରଚୁର, ସେଇଥିପାଇଁ ଯୁବକ ସମାଜ ଆଜି ଏତେ ବେଶି ଗୃହକର-ଧାଣ । ଜୀବ-

ନବ ପ୍ରଖର ରଶ୍ମି ତାହା ପକ୍ଷରେ ଏତେ ଦୂର ଅସହ୍ୟ ଯେ ତାହାର ସମ୍ମୁଖୀନ ହେବାକୁ ଭରସା ନ ପାଇ ସେ ଏହି ରୂପ ଗୋଟିଏ କଳ୍ପ ଆଶ୍ରୟ ନେଉଛି ।

ଏହା ହିଁ କଣ ଯୌବନର ଧର୍ମ ? କିଏ ତେବେ ଅଛି ଜୀବନର ସମ୍ମୁଖୀନ ହେବ—ନିଷ୍ଠୁର, ଉଲଙ୍ଗ, ବାସ୍ତବ ଜୀବନର ? ଏଥିପାଇଁ ଯେଉଁ ଶକ୍ତି, ଯେଉଁ ସାହସ ଓ ଯେଉଁ ଧମନୀର ଆବଶ୍ୟକ ତାହା ଯୁବକ ବ୍ୟତୀତ ଆଉ କାହାଠାରୁ ବେଶି ଆଶା କରାଯାଇ ପାରେ ? କର୍ମର ପ୍ରଖରତା, ଚିନ୍ତାର ତୀକ୍ଷ୍ଣତା ଓ ଚରିତ୍ରର ଦୃଢ଼ତା ଦେଖାଇବା ଦିଗରେ ଆଉ କିଏ ତେବେ ଅଧିକ କ୍ଷମ ?

## ଚରିତ୍ର ଏବଂ ଚିନ୍ତାର ଆଧୁନିକ ବ୍ୟାଖ୍ୟା ଓ ଗତିଧାରା—

ଯୁବକର ଚରିତ୍ର କଥା କହିଲା ବେଳେ ଯେଉଁ ଗୁଣ ସଚ୍ଚରିତ୍ର ବୋଲି ବଦ୍ୟାଳୟରୁ ପୁରସ୍କୃତ ହୁଏ, ତାହାର କଥା ମୁଁ କହୁ ନାହିଁ, ଆପଣମାନେ ମଧ୍ୟ ଭାବୁ ନ ଥିବେ । ଦେହ ଓ ମନ ଭିତରେ ରୋଗର ପରିଚିହ୍ନକୁ ଚରିତ୍ର ବୋଲାଯାଏ ନାହିଁ । ଯାହାର ଦେହ ଓ ମନ ଯେତିକ ପରିମାଣରେ ସୁସ୍ଥ ବା ସବଳ, ସେ ସେତିକ ବେଶି ବୁଦ୍ଧି-ପାରେ କମ୍ବା କରିପାରେ, ଗଢ଼ିପାରେ କିମ୍ବା ଭାଙ୍ଗିପାରେ, ମାନି ପାରେ କିମ୍ବା ଅମାନ୍ୟ କରେ, ଅଥବା ନିଜପାଇଁ ଯେ ଯେତେ ବେଶି ବନ୍ଧୁ କିମ୍ବା ଶତ୍ରୁର ସୃଷ୍ଟି କରିପାରେ, ତାହାର ଚରିତ୍ର ଦୃଢ଼ତା ସେତିକ ବେଶି ଅନୁଭୂତ ହୁଏ । ତାହା ହିଁ ଏଠାରେ ମୋର ପ୍ରତିପାଦ୍ୟ ।

କିନ୍ତୁ ଚିନ୍ତା ବିଷୟରେ କହିବାକୁ ଗଲେ ଆଧୁନିକ ଜଗତର ଭାବଧାରା ସମ୍ବନ୍ଧରେ ଏହା ହିଁ ବୋଧହୁଏ ସ୍ଥିର ମତ ଦିଆଯାଇ

ପାରେ ଯେ, ଏହାର କୌଣସି ବିଭାଗରେ, କୌଣସି ବିଷୟ ବା ତଥ୍ୟ ସମ୍ବନ୍ଧରେ ସ୍ଥିର ମତ ବ୍ୟକ୍ତ କରିବା କଠିନ । ମନେ ହୁଏ ଯେମିତି ଆମମାନଙ୍କର ଏହି ପୃଥିବୀ ସମସ୍ତ ସୌର ଜଗତ୍ ସହିତ ଆଗ ଅପେକ୍ଷା ଶହେ ଗୁଣ ବେଗରେ ଗତି କରୁଛି । ଆଜି ପର୍ଯ୍ୟନ୍ତ ଯେତେ ତଥ୍ୟ ଓ ସିଦ୍ଧାନ୍ତ ଶହ ଶହ ବର୍ଷ ଧରି ଶିଳା ପରି ସ୍ଥାଣୁ ହୋଇ ପଡ଼ିଥିଲା, ହଠାତ୍ ଯେମିତି ଏହି ଘୂର୍ଣ୍ଣିତ ଜଗତର ଜଳପ୍ରପାତରେ ପାଣି ପରି ତରଳ ହୋଇ, ନିଶ୍ଚିହ୍ନ ଯାଉଛି । ଚିନ୍ତାର ସ୍ରୋତ ଏ ଯୁଗ ପ୍ରଳୟ ବେଗରେ ଆସିଛି ଯେ, ତାହା ଭିତରୁ ଏକ ସ୍ଥିର ଚିନ୍ତା ବାଛି ନେବା ପାଇଁ ଦୁଃସହ ସାହସର ପ୍ରୟୋଜନ ।

ସମଗ୍ର ପୃଥିବୀ ହିଁ ଏକ ପ୍ରକାଣ୍ଡ ରଙ୍ଗନାଗାର ରେ ପରିଣତ ହୋଇ ଅଛି । ନୀତିନୀତି, ସମାଜ, ଧର୍ମ ଓ ସଂସ୍କୃତି ଭିତ୍ତିକ ପ୍ରତି-ଷ୍ଠାନରେ ହିଁ ବ୍ୟବସ୍ଥା ଆସୁଛି ଏହିଠାରୁ, ପ୍ରତ୍ୟେକ ଦେଶ ଓ ପ୍ରତ୍ୟେକ ଜାତିର ଚିନ୍ତାଧାରା ସେଥିପାଇଁ ଆଜି ସେହି ଏକ ଦିଗକୁ ଗତି କରିବାକୁ ଚାହେଁ ଏବଂ ଏକ ଭାବରେ ପ୍ରଭାବିତ ହେଉଛି । ଆହାର, ବିହାର, ବସନ, ଭୂଷଣ, ଗୀତ, ଗତି ମଧ୍ୟ ହିଁ ରଙ୍ଗନା-ଗାରର ପ୍ରଗତିଶୀଳ ଚିନ୍ତାଧାରାର ଅନୁବର୍ତ୍ତୀ ହୋଇ ଏକ ସ୍ୱତନ୍ତ୍ର ଧାରଣା ସମ୍ବନ୍ଧୀୟ ସୂଚନା ଦେଉଛି । ଦୁନିଆର ଚିନ୍ତାଧାରା ସମସ୍ତ ଏକ-ମୁଖୀ, ଏହା ସେପରି କୌଣସି ଭୌଗୋଳିକ ସୀମା ବା ଦେଶ ବିଶେଷ, ଅଥବା କୌଣସି ଧର୍ମ କିମ୍ବା ଭାଷାଗତ ଜାତି ବିଶେଷ ମଧ୍ୟରେ ଏକଚାଟିଆ ନୁହେଁ, ଜଗତର କର୍ମଧାରା ପ୍ରଣାଳୀର ଗତି ମଧ୍ୟ ଆଜି ସେହିପରି । ପୃଥିବୀର ସବୁ ଧର୍ମ ଉପରେ ଏହି ଚିନ୍ତାର ଧକ୍କା ଏପରି ପ୍ରବଳ ଭାବରେ ଲାଗିଛି ଯେ ପୃଥିବୀମୟ ଗୋଟିଏ ଏକକ ଧର୍ମ ପ୍ରଚଳନର କିମ୍ବା ଅନ୍ୟ କଥାରେ ସମ୍ପୂର୍ଣ୍ଣ ଧର୍ମହୀନ ହେବାର

ସୂତ୍ରପାତ ହୋଇଛି । ଆଜ ଅନେକ ଘଟଣା ପରେ ଆବସିନିଆର ସମ୍ରାଟ ଏବଂ ସମ୍ରାଟ ପତ୍ନୀ ସମଗ୍ର ସାମ୍ରାଜ୍ୟର ଲୋକଙ୍କୁ ଘେନି ଗିର୍ଜା ଗୃହରେ ଯେତେ ଉପାସନା କଲେ, ପୁଣି ସ୍ୱଗୃହରେ ଯେତେ ଉପବାସ କଲେ, ସେଥିରୁ ସମାନ୍ୟ ଅଂଶରେ ମୁସୋଲିନୀଙ୍କ ପାଖରେ କରିଥିଲେ, ସେ ଦେଶର ଅବସ୍ଥା ବର୍ତ୍ତମାନ ଅପେକ୍ଷା ବେଶି ସୁବିଧାଜନକ ହୋଇଥାନ୍ତା ବୋଲି ପୃଥିବୀମୟ ସମସ୍ତେ ଜାଣନ୍ତି ।

## ଭାରତର ସ୍ୱାଦେଶିକତା କାହିଁ ?—

ପୃଥିବୀମୟ ଧର୍ମ ଉପରେ ଯେଉଁ ବିପତ୍ତି, ଦେଶ ଓ ଜାତି ବିଶେଷର ସ୍ୱାଦେଶିକତା ଉପରେ ମଧ୍ୟ ସେହି ରୂପ ଏକ ତୋଫାନ ବହୁଛି । ପୁରାଣ ଦେଶ ଭାରତବର୍ଷକୁ ମଧ୍ୟ ଏହି ପ୍ରଭାବ ଅଙ୍ଗେ ଅଙ୍ଗେ ଅନୁଭବ କରିବାକୁ ପଡ଼ୁଛି । ତାହାର ପରାଧୀନତାର ସକଳ ବାଧା ସତ୍ତ୍ୱେ ଆଜି ତାହାକୁ ସମଗ୍ର ପୃଥିବୀର ଶିକ୍ଷା, ସଭ୍ୟତା, ନୈତିକତା ଓ ସାମାଜିକତାକୁ ନିଜର କରି ନ ପାରିଲେ, ଅର୍ଥାତ୍ ଆଧୁନିକ ବିଜ୍ଞାନ ସଭ୍ୟତାକୁ ଯଥାଶକ୍ତି ଅନୁକରଣ କରି ନ ପାରିଲେ ଗତ୍ୟନ୍ତର ନାହିଁ । ଆଜ ମଧ୍ୟ ଏହାକୁ ଗ୍ରହଣ କରିବାକୁ ସେ ଯେ ବାଧ୍ୟ, ତାହାର ସୁସ୍ପଷ୍ଟ ସୂଚନା ମିଳି ସାରିଲାଣି ।

ଅନନ୍ତ ବା ଅସୀମରେ ଭାସିବାର ଦିନ ତା'ର ଗୁଲି ଗଲାଣି । ଏ ଖଣ୍ଡ ଦୁଇଟିକୁ ହିଁ ଉଦାହରଣ ରୂପେ ଧରିଲେ, ଆଜି ଦେଖା-ଯାଏ, ଏହାକୁ ଘେନି ଭାରତୀୟ ଧର୍ମ, ଦର୍ଶନ ଓ ସାହିତ୍ୟରେ କେତେ ଚିନ୍ତା ଓ କେତେ କଳ୍ପନା ଯେ ଖେଳି ଯାଇଛି, ତାହା ଏକ ଆଶ୍ଚର୍ଯ୍ୟ । ଏହି କଥା ଦୁଇଟା ଭିତରେ କେତେ କାବ୍ୟ କେତେ

କେମାନ୍ତ, କେତେ ପୁରୁଷର ସୃଷ୍ଟି ହୋଇଛି ! କିନ୍ତୁ ଦିନେ ହଠାତ୍ ଅଙ୍କ କଷି, ଗଣି ଅଙ୍କି ଆଇନ୍‌ଷ୍ଟାଇନ ଦେଖାଇ ଦେଲେ ଯେ ଜଗତରେ ଅନାଦି ଓ ଅନନ୍ତ ବୋଲି କୌଣସି ବସ୍ତୁ ନାହିଁ । ଆଇନ୍‌ଷ୍ଟାଇନଙ୍କର ଯୁକ୍ତିକୁ ଖଣ୍ଡନ କରିବାର ପ୍ରତିଭା ଯେପରି ଦିନ ପୃଥିବୀ ସୃଷ୍ଟି କରିବାକୁ ସମର୍ଥ ହୋଇ ନାହିଁ, ସେପରି ଦିନ ଏହା ଉକ୍ତ ତଥ୍ୟ ପାଇଁ ମାନି ନେବାକୁ ନ୍ୟାୟତଃ ବାଧ୍ୟ । ସ୍ୟାଣ୍ଡ ହୋଷ୍ଟ୍ ଟାଇମ୍‌ସରେର ସବୁ ଛିଦ୍ରଦେଶରେ ସଭ୍ୟତାର ପରିଚ୍ଛଦ ନ ଥିଲା । କିମ୍ବା ଟେବୁଲ୍ ଉପରେ କଣ୍ଟା ଚାମଚରେ ଆହାର କରିବା ତାହାର ଅଭ୍ୟାସ ନ ଥିଲା । ଠିକ୍ ଏହି ଧରଣର ଆହାର ପରିଚ୍ଛଦ ମଧ୍ୟ ଜାପାନ, ଚୀନ, ତୁର୍କୀ, ମିଶର ପ୍ରଭୃତି ପ୍ରାଚ୍ୟ ଦେଶ ଗୁଡ଼ିକର ସ୍ୱଦେଶୀ ପୋଷାକ ନୁହେଁ, କିମ୍ବା ଆହାର କରିବା ସ୍ୱଦେଶୀ ରୀତି ନୁହେଁ । ଅଥଚ ସବୁ ଦେଶରେ ଏହା ତାହା ପ୍ରସାର ଲାଭ କରିଛି— କେଉଁଠାରେ ଅଳ୍ପ ଆହାର ପରିଷ୍କାରରେ ଆଉ କେଉଁଠାରେ ପୋଷାକର କେବଳ ଟୋପିଟିରେ ମାତ୍ର ପାର୍ଥକ୍ୟ ଅଛି ।

ଏହାର କାରଣ ଆଉ କିଛି ନୁହେଁ—ଉକ୍ତ ରୂପ ପରିଚ୍ଛଦ କିମ୍ବା ଆହାର ପଦ୍ଧତି ଅପେକ୍ଷା ଅଧିକତର ସ୍ୱାସ୍ଥ୍ୟକର, ବିଜ୍ଞାନସମ୍ମତ ଓ ଯୁଗୋପଯୋଗୀ ରୀତି ଗତ ମାନବର ବୁଦ୍ଧି ଉଦ୍ଭାବନ କରି ପାରି ନାହିଁ ।

ତାହାହେଲେ ଯେ ଧର୍ମଗଲା, ସ୍ୱାଦେଶିକତା ଗଲା, ଆଗ୍ରହ ଗଲା, କିମ୍ବା ପଦ୍ଧତି ଗଲା—ଭାରତବର୍ଷରେ ରହିଲା କେତେବେଳେ ସ୍ୱାଧୀନ ଦେଶ ଜାପାନର ଯାହା ଅଛି, ତୁର୍କିର ଯାହା ଅଛି, ଯୁରୋପ ଓ ଆମେରିକା ଦେଶମାନଙ୍କର ଯାହା ଅଛି, ଭାରତୀୟଙ୍କର ଅବଶ୍ୟ ଖାଲି ସ୍ୱାଧୀନତାଟି ଛାଡ଼ି ଆଉ ସମସ୍ତ ରହିବ ।

ଏହି ବିଜ୍ଞାନ-ସଭ୍ୟତାକୁ ଯେ ଯଦି ବର୍ତ୍ତମାନଠାରୁ ସହିତ ଗ୍ରହଣ କରିପାରେ, ତେବେ ତାହାର ଯାହା ରହିବାର କଥା ତାହା ତ ଅବଶ୍ୟ ରହିବ । ସେ କେବଳ ତା'ର ସ୍ୱାର୍ଥ—ସେ ସ୍ୱାର୍ଥ ଧର୍ମରେ ନାହିଁ, ଦର୍ଶନରେ ନାହିଁ, ସାହିତ୍ୟରେ ନାହିଁ, ନୃତତ୍ତ୍ୱରେ ନାହିଁ, ଅଛି ଏକମାତ୍ର ଅର୍ଥରେ—ଯେଉଁ ସ୍ୱାର୍ଥ ଜାପାନର ଅଛି, ତୁର୍କିର ଅଛି, ଇଂଲଣ୍ଡର ଅଛି ଓ ଆଜି ସବୁ ଦେଶରେ ମଧ୍ୟ ଅଛି । କିନ୍ତୁ ଭାରତର ସଭ୍ୟତା ଓ ସ୍ୱାଦେଶିକତା ଯଦି ଆଜି କାଲି ପରି କେବଳ ଧର୍ମ ଦାର୍ଶନରେ ମୁଖ୍ୟତଃ ଆବଦ୍ଧ ରହେ, ତେବେ ତାକୁ ଖାଲି ଖୋଳଟି ଦେଇ ସନ୍ତୁଷ୍ଟ ରହିବାକୁ ପଡ଼ିବ, ଭିତରଟି ଯାହାର ଶୂନ୍ୟ ।

## ନୂଆ ଓଡ଼ିଶା ପ୍ରଦେଶ ଓ ପୃଥିବୀର ରାଜନୀତିରେ ଯୁବକର ସମ୍ଭାବନା—

ଏହି ଯେ ପୃଥିବୀ-ବ୍ୟାପୀ ଗୋଟିଏ ସର୍ବସାଧାରଣ ସଭ୍ୟତାର ଆରମ୍ଭ ହୋଇଛି, ଏହାକୁ ଅଭିବାଦନ କରିବାର ମଙ୍ଗଳ-ଦୁନ୍ଦୁଭି ଯଦି କାହାର ହାତରେ ଥାଏ ତ, ସେ କେବଳ ଯୁବକ । କାରଣ କ୍ଷୁଦ୍ର ମଧ୍ୟରେ ଆବଦ୍ଧ ରହିବା ତାହାର ସ୍ୱାଭାବବିରୁଦ୍ଧ । ପୃଥିବୀମଯ଼ ଯୁବକର ଚିନ୍ତାଧାରା ସହିତ ନିଜ ଚିନ୍ତାକୁ ଯୋଗ କରିବାର ଯେଉଁ ଆନନ୍ଦ, ତାହା ନିକଟରେ ନୂଆ ଓଡ଼ିଶା ପ୍ରଦେଶର କୋମଳ ରାଜ-ନୀତି, ତରୁଣ କାନକୁ ପୁରୁଣା ଗ୍ରାମୋଫୋନ୍ ରେକର୍ଡ଼ ପରି ହିଁ ଶୁଣା ଯିବାର କଥା । ସୁତରାଂ ଯେ ସମସ୍ୟାକୁ ଯଦି ସେ ଏ ଦେଶର ପକ୍ୱ-କେଶମାନଙ୍କ ହାତରେ ଛାଡ଼ିଦିଏ, ଯେଉଁମାନଙ୍କର ବର୍ତ୍ତମାନ ଟିକିଏ ଆରାମ କରିବା ଓ ସମ୍ପୂର୍ଣ୍ଣ କମ୍ପା ଅର୍ଥ ଉପାର୍ଜନରେ ଅତିଶଯ଼ ମମତା—ତେବେ ତାହାର ଧର୍ମହାନି ଘଟିବ ନାହିଁ ।

ଏହା ଦ୍ୱାରା ଓଡ଼ିଶା ପ୍ରଦେଶ ପ୍ରତି ଯୁବକର କୌଣସି କରିବା ନାହିଁ ବୋଲି କହିବା ମୋର ଉଦ୍ଦେଶ୍ୟ ନୁହେ । ଅନେକ ଓଡ଼ିଆ ଯୁବକ ବାକ୍ୟଦ୍ୱାରା, ମନଦ୍ୱାରା, ସଭା ସମିତିରେ ସ୍ୱେଚ୍ଛାସେବକ ହେବାଦ୍ୱାରା କିମ୍ବା ଅତ୍ୟଧିକ ଦେଶ ଭକ୍ତ ଯାହାଙ୍କର ସେମାନେ ଚାକିରି ଦ୍ୱାରା ମଧ୍ୟ ଏ ପ୍ରଦେଶର ସେବା କରିବେ । ସୁତରାଂ ପୃଥିବୀର ଅନ୍ୟ ସବୁ ଦେଶର ଶାସନତନ୍ତ୍ର ମରି ହୁଏ, ଓଡ଼ିଶା ପ୍ରଦେଶର ଶାସନତନ୍ତ୍ର ମଧ୍ୟ ସୁଦୃଢ଼ ଓ ସବଳ ହେବାରେ ବାଧା ନାହିଁ; ପୁଣି ପୃଥିବୀର ଅନ୍ୟ ସବୁ ଦେଶର ରାଜନୀତି ଯଦି ଏ ପ୍ରଦେଶର ରାଜନୀତି ମଧ୍ୟ ଦୁର୍ବଳ ଓ ହାସ୍ୟାସ୍ପଦ ହୋଇ ରହିବ । କାରଣ ଶାସନତନ୍ତ୍ର ଗୁଡ଼ିକର ମୌଳିକ ପରିକଳ୍ପନା ରହିଛି । ଯୁବକର ଦଳ ଉଚିତ ପୁଣି ରାଜନୀତି କ୍ଷେତ୍ରରେ ପ୍ରାପ୍ୟ ପହଞ୍ଚିବାକୁ ନିକଟ ଯାବତୀୟ କର୍ମୀ; ଯେଉଁମାନେ କେବଳ ଉପଦେଶ ଦେବା ବ୍ୟତୀତ ଅନ୍ୟ କିଛି କରି ପାରନ୍ତି ନାହିଁ । ଏହା କହିଲେ ଠିକ୍ ଯଦି ତଳ ଉପର ଓ ଉପର ତଳ କରି ଦିଆଯାନ୍ତା—ଅର୍ଥାତ୍ ସରକାରୀ ଚାକିରିରେ ପ୍ରବେଶ କରିବାର ବୟସ ଯେପରି ୨୫ ବର୍ଷ୍ୟନ୍ତ ନ ରହି ୪୫ ପରେ ଦିଆଯାନ୍ତା---ତାହାହେଲେ ମନେ ହୁଏ, ସମଗ୍ର ପୃଥିବୀର ରାଜନୀତି କ୍ଷେତ୍ରରେ ଆଜି ଅନେକ ପ୍ରକାର ସୁବିଧା, ଅନେକ ପ୍ରକାର କର୍ମଠତା ଏବଂ ବିଚକ୍ଷଣତା ଦେଖାଯାନ୍ତା । ଦେଶ ଦେଶ ଭିତରେ ଆଜି ଯେଉଁ ମନୋମାଳିନ୍ୟ, ଜାତିଙ୍କ ଭିତରେ ଯେଉଁ ଅସାମଞ୍ଜସ୍ୟ, କିମ୍ବା ଜନସାଧାରଣଙ୍କ ଭିତରେ ଯେଉଁ ଅସନ୍ତୋଷ ଦେଖାଯାଏ, ସେଥି ମଧ୍ୟରୁ ଅନେକ ସମସ୍ୟା ହୁଏତ ସହଜରେ ସମାଧାନ ହୋଇ ପଡ଼ନ୍ତା । ଜେନେଭାର ଆନ୍ତର୍ଜାତିକ ସଭା ଲେକ୍-ସକ୍ସେସରେ ଆଜି ହୁଏତ ପ୍ରତି ପଦରେ ଅପଦସ୍ଥ ହୁଅନ୍ତା ନାହିଁ । ତିରିଶ ପଇଁତିରିଶ ବର୍ଷ ବୟସ୍କ ପୁରୁଷମାନେ ମଧ୍ୟ ସହଜରେ ଶାସନତନ୍ତ୍ର ଚଳାଇ ପାରନ୍ତେ ।

କାରଣ ଶାସନତନ୍ତ୍ର ଗୁଡ଼ିକର ନିୟମ କାନୁନ୍ ଯେ ରୁଗ୍ଣ ଝଧିବଙ୍କ ଓ
ସୁଶୃଙ୍ଖଳ ବୋଲି ଶୁଣାଯାଏ, ସେଥିରେ ସମ୍ପୂର୍ଣ୍ଣ ବନ୍ଧ୍ୟସନ୍ତାନ ଲୋକ
ମଧ୍ୟ ସେ ଗୁଡ଼ିକୁ ତ ଚଳାଇ ନେବାର କଥା । ଆଜି ମଧ୍ୟ ଯୁବକର
କ୍ଷେତ୍ରରେ ଏ ରୂପ ପରିବର୍ତ୍ତନ ଦ୍ୱାରା ସମାଜରେ ଏକ ପରିବର୍ତ୍ତନର
ଆଶା କରାଯାଇ ପାରେ—ଅର୍ଥାତ୍ ବିବାହ କ୍ଷେତ୍ରରେ ପୁରୁଷର ବୟସ
ପଚିଶ ବର୍ଷ ଭିତରେ ଅବଦ୍ଧ ନ ରହି ହୁଏତ ନିଜ ଗ୍ଳାଏ ଆଜି
ତିରିଶ ଅତଗଇ ଯାନ୍ତା ।

## ଏ ଦେଶର ତରୁଣୀ—

ଆଧୁନିକ ତରୁଣ ବିଷୟରେ କଥା କହିବାକୁ ଗଲେ ତରୁଣୀର
କଥା ମଧ୍ୟ ତାହା ସାଥିରେ ଆସି ପଡ଼େ । କିନ୍ତୁ ସେ ଧରଣର
କୌଣସି ବସ୍ତୁ ଆଦୌ ଅଛି କି ନାହିଁ, ତାହାର ସନ୍ଧାନ ପାଇବା ତ
ଦୂରର କଥା, କେବେ ପାଇଁ ମଧ୍ୟ ସୁବିଧା କାହିଁ ? ସେମାନଙ୍କ ମଧ୍ୟରୁ
ଯେଉଁମାନେ ଶିକ୍ଷା ପାଉ ନାହାଁନ୍ତି ଏବଂ ଯେଉଁମାନଙ୍କର ଦୁରାଶା ହୁଏ
ରୁଗ୍ଣ ଓ ଦୁର୍ବଳ ଶିଶୁ ଉତ୍ପାଦନ କରିବାରେ, ଆଜି ଯେଉଁ ଅଳ୍ପ
କେତେଜଣ ଶିକ୍ଷା ପାଉଥିବାରୁ ଅବିବାହିତା ରହନ୍ତି, ତାଙ୍କର
ଦୁରାଶା ହୁଏ ଅଶାନ୍ତ ତରୁଣଙ୍କ ତୁଚ୍ଛ ବିକୃତ ପ୍ରେମକବିତା ରଚନାରେ,
ଯାହାଲାଗି ସେହିମାନଙ୍କର ଗତିବିଧି ହିଁ ବହୁ ଅଂଶରେ ଦାୟୀ । ପୁଣି
ଶିକ୍ଷା ପାଉଥିବା ଏହି ତରୁଣୀମାନଙ୍କ ମଧ୍ୟରୁ ଅଧିକାଂଶ ହିଁ ପ୍ରବେଶିକା
ପରୀକ୍ଷା ସଙ୍ଗେ ସଙ୍ଗେ ସ୍ୱାମୀ ଗୃହରେ ପ୍ରବେଶ କରିବାର ଭରସା
ରଖିଥାନ୍ତି; କାରଣ ତାହାପରେ ଏହି ଦେଶରେ ପୁଣି ସ୍ୱାମୀ ମିଳିବା
ଦୁଷ୍କର । ସୁତରାଂ ତରୁଣୀର ପ୍ରଥମ ଶିକ୍ଷା କାଳରେ ହିଁ ସ୍ୱାମୀ ଅନ୍ୱେଷଣ
ବ୍ୟତୀତ ଆଉ ଯେ କିଛି ନିହିତର ଆଦର୍ଶ ଅଛି, ତାହାର ଉଲ୍ଲେଖ-
ଯୋଗ୍ୟ ପରିଚୟ ଏ ଯାଏ ଯେତିକି ମିଳୁଛି, ତାହାକୁ କେବଳ
ଅଙ୍ଗୁଳି ମଧ୍ୟରେ ହିଁ ଧରିନେବାକୁ ହେବ ।

ଆଜି ଯଦି ତାହାର ଶିକ୍ଷାର ପ୍ରସାର ନ ଥାଏ, ତାହାହେଲେ ବନ୍ଧୁ ତରୁଣଙ୍କ ପରି ବନ୍ଧୁ ତରୁଣୀଙ୍କର ମଧ୍ୟ ନିଜର ପାଠ୍ୟ ପୁସ୍ତକ ଗୁଡ଼ିକ ଅନାମଧେୟ ଲେଖକଙ୍କର ଦେଢ଼େଇ ଖଣ୍ଡ ଅନ୍ୟ ପ୍ରାଦେଶିକ ଭାଷାର ଉପନ୍ୟାସ ବା ସେହିପରି କିଛି ପୁସ୍ତକ ପାଠ ତାଲିକାକୁ ସମ୍ପୂର୍ଣ୍ଣ କରୁଛି । ଭାରତୀୟ ଯେ କୌଣସି ପ୍ରାଦେଶିକ ସାହିତ୍ୟ ମୋ ଅନେକାଂଶରେ ଇଂରାଜୀର ଉଚ୍ଛିଷ୍ଟ ବା ଅନୁକୃତି, ଏହା ଜାଣି ମଧ୍ୟ ଏବଂ ଇଂରାଜୀ ପଢ଼ିବାର ସବୁ ସୁବିଧା ଥାଇ ମଧ୍ୟ ଇଂରାଜୀ ତା'ଠାରୁ ଅଧିକ ଆଦର ପାଏ ନାହିଁ । ଅଥଚ ପ୍ରକୃତ କ୍ଷେତ୍ରରେ ଇଂରାଜୀ ହିଁ ଏ ଦେଶର ରାଷ୍ଟ୍ର ଭାଷା, ଏବଂ ନିଜ ଭାଷା ଛଡ଼ା ଦ୍ୱିତୀୟ ଭାଷା ରୂପେ କେବଳ ଇଂରାଜୀକୁ ଭଲ ଜାଣିଲେ କିମ୍ବା ଲେଖି ଜାଣିଲେ ହିଁ ଖାଲି ଭାରତ ବର୍ଷରେ ନୁହେଁ, ସମଗ୍ର ପୃଥିବୀରେ ମଧ୍ୟ ଚଳିବାର ଉଦ୍ଦେଶ୍ୟକ । କିନ୍ତୁ ତରୁଣ ତାହା କରିବ ନାହିଁ, କାରଣ ସେଥିପାଇଁ ଅଧିକ ପରିଶ୍ରମର ପ୍ରୟୋଜନ ଓ ଟିକିଏ ବେଶି ମସ୍ତିଷ୍କ ଚାଳନା ଆବଶ୍ୟକ ।

## ଦେଶପାଇଁ ଜେଲ କିମ୍ବା ପ୍ରାଣବଳି ଯୁବକର ଆଦର୍ଶ ନୁହେଁ—

ବନ୍ଧୁଗଣ ! ତରୁଣ ତରୁଣୀକୁ ଲୋକଚକ୍ଷୁରେ ହୀନ କରି ଧରିବା ମୋହର ଉଦ୍ଦେଶ୍ୟ ନୁହେଁ । ପ୍ରକୃତ କ୍ଷେତ୍ରରେ ସେ ଗୋଟାଏ ଭୀରୁ ଓ ପଳାତକ ହୋଇ ରହିଛି, ଏହି ସତ୍ୟଟା ହିଁ ବାରମ୍ବାର ତାକୁ ମୁଁ ଜଣାଇ ଦେବାକୁ ଚାହେଁ । ବାରମ୍ବାର ଜଣାଇ ଦେବାକୁ ଚାହେଁ ଯେ ଦେଶରେ ଯଦି ତାଜା ରକ୍ତ କେଉଁଠାରେ ଥାଏ, ତେବେ ଅଛି ଖାଲି ତାହାରି ଧମନୀରେ, ପୁଣି କେଉଁଠାରୁ ଯଦି ପ୍ରାଣର ସୂଚନା ମିଳେ ତେବେ ପ୍ରଥମ ତାହାରିଠାରୁ ହିଁ ମିଳିବା ଉଚିତ । ଏହିକଥାଟି ଦ୍ୱିରୁକ୍ତି ଦେବାକୁ ମଧ୍ୟ ମୋର ଭୟ ନାହିଁ ।

ଏହା ଦ୍ୱାରା କେହି ଯେପରି ନ ବୁଝନ୍ତି ଯେ ସମାଜ ଓ ସମଷ୍ଟି ପାଇଁ ରକ୍ତ କିମ୍ବା ପ୍ରାଣବଳି ଦେବା ଲାଗି ଏଠାରେ ମୁଁ ଯୁବକଙ୍କୁ ଆହ୍ୱାନ କରୁଛି; ଅଥବା ଦେଶ ପାଇଁ ଜେଲ ବରଣ କରିବାକୁ ତାହାଙ୍କୁ ପ୍ରବର୍ତ୍ତାଉଅଛି । ଦେଶ ପାଇଁ ମରିବାକୁ ହେବ ନାହିଁ ବନ୍ଧୁଗଣ ! ବଂଚିବାକୁ । ଜେଲରେ ପଶିବାକୁ ହେବ ନାହିଁ—ସମାଜର ବହୁ ଅପଦାର୍ଥଙ୍କୁ ତାହା ଭିତରେ ପୂରାଇବାକୁ ହେବ । ଜେଲ କିମ୍ବା ମୃତ୍ୟୁ ଜୀବନର ଏକ ମାତ୍ର ଆଦର୍ଶ କିମ୍ବା ଏକ ମାତ୍ର ଲକ୍ଷ୍ୟ ନୁହେଁ । ପୃଥିବୀରେ ବହୁ କର୍କଶ, ବହୁ ବିପଦ୍‌ପୂର୍ଣ୍ଣ ମାର୍ଗ ଅଛି, ଯାହା ତୁଳନାରେ ଜେଲରେ ପଶିବା କିମ୍ବା ମୃତ୍ୟୁ ବରଣ କରିବା ଅତି ସାମାନ୍ୟ ମନେ ହୁଏ ଓ ଅତି ଡୋକାମୀର ପରିଚୟ ଦିଏ । ଏ ଦୁଇଟା ପନ୍ଥା ତ ସବୁ ଶ୍ରେଣୀର ଲୋକଙ୍କ ପାଇଁ ସବୁ ସମୟରେ ମୁକ୍ତ । ମୁଁ ମଧ୍ୟ ଇଚ୍ଛା କଲେ ଏଠାରୁ ହିଁ ଘରକୁ ନ ଯାଇ ଜେଲକୁ ଯାଇ ପାରେ ଏବଂ ଆପଣମାନଙ୍କ ଭିତରୁ ଜଣେ ଯେ କାହାକୁ ହତ୍ୟା କରି ଫାଶି ଲଟକି ପାରେ । କିନ୍ତୁ ସେ ଚୁପ ବୋକା ବନିବାକୁ ମୁଁ ଆସି ନାହିଁ । କାରଣ ମୁଁ ଜାଣେ, ଏଥି ପୂର୍ବରୁ ଆପଣମାନେ ବହୁ ଲୋକଙ୍କୁ ବୋକା ବନେଇ ଜେଲ ମୁହାଁକୁ ପେଲି ଦେଇ ବେଶ୍ ନିଶ୍ଚିନ୍ତରେ ଅଛନ୍ତି ।

# ଜହ୍ନ ପୁଛି ଜାଣେ ଯେ

ବାକ୍ୟ, ମନ ଓ ହାତ ଗୋଡ଼ ଲଗାଏତ ଯେତୋଟି ଇନ୍ଦ୍ରିୟ ମିଶାଇ ମଣିଷର ସଙ୍ଗା ତିଆରି ହୋଇଅଛି, ପୃଥିବୀରେ ସଭ୍ୟ ଅସଭ୍ୟ ସମସ୍ତଙ୍କୁ ବୁଝିହିଁ ମନେ ହୁଏ, ସେଥି ଭିତରୁ ହାତ ଗୋଡ଼ହିଁ ସବୁଠୁଁ ବେଶୀ ବଳୁଆ । ଯାହାର ହାତ ଗୋଡ଼ ଯେତିକ ବୋଲ କରିପାରେ, ଦୁନିଆଁରେ ମଣିଷ ଘର ଗୁଲ ବୁଲିବାକୁ ପଡୁଆ ତାହାର ସେତିକ କମ । ହାତ ଗୋଡ଼ ପଛକୁ ଦେଖାଯାଏ ମୁଣ୍ଡ ଜୋର ଏବଂ ସବା ଶେଷରେ ବିଦ୍ୟା ବୁଦ୍ଧି ନାମଧେୟ ଇନ୍ଦ୍ରିୟଜାତ ଗୁଣମାନ ବୋଧହୁଏ ଆର୍ତ୍ତଙ୍କ୍ ସରେ ଥାନ ପାଇବ ।

ଏ ରୂପ ଶ୍ରେଣୀ ବିଭାଗର ଯାଥାର୍ଥ୍ୟ ବୁଝିବା ପାଇଁ ବିସ୍ତର ଉଦାହରଣ ସମସ୍ତଙ୍କର ସବୁ ପାଖରେ ପଡ଼ି ରହିଛି । "ଜୋର ଯାହାର ମୁଲକ ତାହାର" କଥାଟା ପଛରେ ଯେ ଅନେକ ଅଭିଜ୍ଞତା ଓ ପର୍ଯ୍ୟବେକ୍ଷଣ ଲୁଚି ଅଛି, ପୁଣି ପୃଥିବୀର ଅଳ୍ପ କେତୋଟା ସତ୍ୟ ଭିତରୁ ଏ ଯେ ଗୋଟେ ବଡ଼ ସତ୍ୟ, ଏବଂ ଏତିକ ପ୍ରମାଣ କରିବା ପାଇଁ ଡାରୱିନଙ୍କଠାରୁ ନିଟ୍‌ସେଙ୍କ ପର୍ଯ୍ୟନ୍ତ ବୈଜ୍ଞାନିକ ଓ ଦାର୍ଶନିକ-ଗଣ ଏବଂ ସେମାନଙ୍କର ବହୁ ଚେଲା ଓ ଟୀକାକାର ଯେ ଅସୁମାର ଖାତା ଲେଖି ଯାଇଛନ୍ତି, ସେ କଥା ମନେ ପକାଇଲେ ଅନାମଧେୟ ଏହି ଓଡ଼ିଆ ପ୍ରବଚନକାରଙ୍କୁ ସାବାସ୍ ନ କହି ରହି ହେବ ? ଏହି ପ୍ରବଚନକାରଙ୍କ କଥା ସଙ୍ଗେ ଇଂଲଣ୍ଡର ବିଜ୍ଞାନ-ବିଶାରଦ

ଡାରଉଇନଙ୍କ Survival of the Fitt est ଏବଂ ଜର୍ମାନ ଦାର୍ଶନିକ ନୀତ୍‌ସେଙ୍କର Will-to-Power ଓ ଭାରତର ଶ୍ରେଷ୍ଠ ଋଷିଙ୍କର "ନାୟମାତ୍ମା ବଳହୀନେନ ଲଭ୍ୟଃ" କଥାଗୁଡ଼ିକ ତୁଳନା କଲେ ବର୍ବର ସମାଜ ଓ ଜୀବନ ହେବ ନାହିଁ କି ? ସେଇ ଗୋଟିଏ କଥାକୁ କିନ୍ତୁ ତିନିଏ ପଣ୍ଡିତ ବାଟରେ ଅଲଗା ଭାଷାରେ କହିବାର ଭଙ୍ଗି ଛଡ଼ା ଏଗୁଡ଼ିକରେ ଆଉ କଣ ଅଛି ?

ଏବେ ମଧ୍ୟ ଆମେ ଦେଖୁଥାଉଁ, ସାଧାରଣତଃ ଯେଉଁ ଲୋକଙ୍କୁ ଅଧମ ଓ ଅନାର୍ଯ୍ୟ କହୁଥାନ୍ତି, ତାଙ୍କ ଭିତରେ ସବୁଠୁଁ ବଳୁଆ ଲୋକର ଅଯୋକ୍ତିକ ଅଧିକାର ଯେମିତି ଅଛି, ସଭ୍ୟ ଆର୍ଯ୍ୟଙ୍କ ଭିତରେ ବି ଠିକ୍ ସେଇଆ । ପଶୁ ମାନଙ୍କ ଭିତରେ ମଧ୍ୟ ବଳୁଆ ଷଣ୍ଢ, ବଳୁଆ କୁକୁର ବା ବଳୁଆ ଷଣ୍ଢ ନିଜ ଆହାର ବଢ଼ାଇ ପାଇଁ ଦୁର୍ବଳଠାରୁ ବେଶି ଆଦାୟ କରିଥାଏ । ଆର୍ଯ୍ୟ ଅନାର୍ଯ୍ୟ ସବୁ ମଣିଷ ଆପଣାର ଭଲ ପରଖ ପାଇଁ ସୁବିଧା ପାଇଲେ ସବୁ ପ୍ରକାର ଧର୍ମ ଓ ମତ ଯୁକ୍ତିରେ ଉକ୍ତ ରୂପ ଆଚରଣ କରିବାକୁ ଛାଡ଼େ ନାହିଁ ।

ଏ ତଥ୍ୟର ଉଦାହରଣ ପାଇଁ ଖାଲି କୁକୁର କୁକୁରୀ, ଷଣ୍ଢ ଗାଈ କମ୍ବା ପୁରୁଷ ଓ ସ୍ତ୍ରୀର ସମ୍ବନ୍ଧ ଉଲ୍ଲେଖ କଲେ ଯଥେଷ୍ଟ ହେବ ନାହିଁ । କିନ୍ତୁ ଏ ନବୋନ୍ମେଷି ଗୃହିଲେ ବଳୁଆ ବ୍ୟକ୍ତିଙ୍କ ବଳୁଆ ଜାତିର ସ୍ୱାର୍ଥପରତା ଘୃଣାଭରର ଉତ୍କଟ ଓ ମାତ୍ରା । ବିଜିତ ଦେଶର ସ୍ତ୍ରୀ ଉପରେ ବିପକ୍ଷ ସୈନ୍ୟମାନେ ଯେଉଁ ଧର୍ଷଣ କରନ୍ତି, ତାହା ଆଜି ମଧ୍ୟ ଅସାଧାରଣ ଘଟଣା ନୁହେ । ଦୁର୍ବଳ ବୋଲି ତାହାର ପୈତୃକ ବୃତ୍ତି କେବଳ ପାଇଁ କେତେ ପରିହାସ, ଅପମାନ ଓ ହିଂସା ଓ ଚେଷ୍ଟା ସହି ଶେଷରେ ସମଗ୍ର ଓଡ଼ିଆ ଜାତିଟା ପିତୃପୁରୁଷଙ୍କ

ଶାଳ କବ ଇଣ୍ଡା ହେବାକୁ ବାଧ ହୋଇଛନ୍ତି ; ଅଥଚ ଶିଖ୍ ଜାତିଟା ସୁସଭ୍ୟ ଇଂରେଜ ସମ୍ରାଟଙ୍କ ଦରବାରରେ ମଧ୍ୟ ଖାଲି ଚୁଟି ନୁହେଁ, ତହିଁରେ ପାନିଆଁ ଖୋପା ଏବଂ ଲମ୍ବା ଦାଢ଼ିରେ ଲହୁଆବଣାଲଗା ହାତ ଲୁଲାଇ ନିର୍ବିକାର ଚିତ୍ତରେ ବସୁଛନ୍ତି , ସେଥିରେ କାହାର ଟିକିଏ ଟୁଁ ଚୁଁ ହେବାକୁ ସାହସ ନାହିଁ !

ହାତ ଗୋଡ଼ ଯାହାର ବେଶି ବୋଲ କରେ ନାହିଁ , ତାକୁ ପ୍ରାୟ କସ୍ରତ୍‌ମାତ୍ର କରିବାର ଦେଖାଯାଏ ମୁହଁ ଜୋରରେ । କିନ୍ତୁ ହାତ ଗୋଡ଼ ଯୁକ୍ତ ପାଖରେ କଥାର ଯୁକ୍ତିକୁ ଅନେକ ସମୟ ତୁଣ୍ଡ ବନ୍ଦ କରିଥିବାର ଦେଖାଯାଏ । ପୃଥିବୀର ନାରୀ ଏବଂ ଶିଶୁ ଜାତିର ଏହି କାରଣରୁ ମୁହଁ ବେଶି ବୋଲକରେ ଏବଂ ଭାରତବର୍ଷର ନାରୀ ଏହି କାରଣରୁ ପୁରୁଷ ଆଗରେ ଚୁପ୍ । ଏହି କାରଣରୁ ହିଁ ମିଲିଟାରିଜମ୍‌ର ଆସନ ଆଜି ପୃଥିବୀର ଶୀର୍ଷସ୍ଥାନରେ ଏବଂ ଆନ୍ତର୍ଜାତିକ ଲିଗ୍‌ର ରାଜନୈତିକ ବାକ୍‌ସ୍ଫୁର୍ତ୍ତି ଇଟାଲି ଜର୍ମାନୀର ସାମରିକ ଧମକ ପାଖରେ ଏକାବେଳେ ତୁଚ୍ଛ ଓ ଅର୍ଥହୀନ । ଏହି କାରଣରୁ ହିଁ ଆମ ଆଖି ଆଗରେ କେତେ କାଳର ଗୋଟେ ପୁରୁଣା ସାମ୍ରାଜ୍ୟ ସ୍ୱାଧୀନତା ହରାଇ ବୈଧବ୍ୟ ଗ୍ରହଣ କଲା , ଆଉ ଗୋଟା-କର ଦଶା ତାହାହିଁ ହେବାକୁ ଯାଉଛି ।

ଏବିସିନିଆରେ କୁହାଳିଆ ଲୋକେ ଥିଲେ , ଜେନେଭାରେ ମଧ୍ୟ ଅଛନ୍ତି । କିନ୍ତୁ ଅଟୁଳିକ ସ୍ୱରରେ ଗୋଇଠା ଗୁଡ଼ା ମାରିବାପାଇଁ ସେ ଦେଶ ଲୋକଙ୍କର ହାତ ଗୋଡ଼ ଖୁବ୍ ସମର୍ଥ ନୁହେଁ; ସେଥିପାଇଁ ତାଙ୍କର ଏହି ଦଶା । ଯେତେ କୁହାଳିଆ ହୁଅ, ଭଲ ବୁଝେ ଯେ ହାତ ଗୋଡ଼ ଚଳାଇ ଜାଣେ , ତାହା ପାଖେ ସାବଧାନରେ ମୁହଁ ଫିଟାଇବାକୁ ପଡ଼ିବ । ଯୁଦ୍ଧଭୂଇଁର ନାନା ଅଦ୍ଭୁତ ଗପ ଭିତରେ ଶୁଣାଯାଏ—

ଯେତେ ଯେତେ ମଲ୍ ଖଣ୍ଡିଆ ସୈନ୍ୟସଂଖ୍ୟା ଏତେ ବେଶି ହୋଇ ପଡ଼େ ଯେ ଡାକ୍ତର ପକ୍ଷରେ ପ୍ରତି ସୈନ୍ୟଙ୍କୁ ପରୀକ୍ଷା କରି କଏ ମଲ୍ କଏ ଜୀଅନ୍ତା ବାରି ପାରିବା ଅସମ୍ଭବ ହୋଇ ଉଠେ । ମଲ୍ ଖଣ୍ଡିଆଙ୍କୁ ନଅସ ନଅସ ସୁମାରି କରି ସର୍ଟିଫିକେଟ୍ ଦେଲାବେଳେ ଡାକ୍ତରର ଏ କ୍ଷେତ୍ରରେ ଭୁଲ ହେବା ହିଁ ସାଧାରଣ କଥା ଏବଂ ଠିକ ହେବା ବରଂ ଅସାଧାରଣ । ସେଥିପାଇଁ ଏ ରୂପ ମଲ୍ ସାର୍ଟିଫିକେଟ୍ ପାଇ ସାରିବା ପରେ କେହି କେହି ଜୀଅନ୍ତା ସୈନ୍ୟର ହୋସ ଆସି ଗଲେ ଏବଂ ସେ ମଲ୍ଲୋକ ପାଖେ ରଖା ହୋଇଥିବାର ଆପତ୍ତି କଲେ, ଜଗୁଆଳମାନେ ତାହାର ସାକ୍ଷ୍ୟ ଅପେକ୍ଷା ଡାକ୍ତର ସର୍ଟିଫିକେଟ୍ ବେଶି ମୂଲ୍ୟବାନ ଓ ବିଶ୍ୱାସଯୋଗ୍ୟ ବୋଲି ଜବାବ ଦିଅନ୍ତି । ଅଥଚ ସେହି ସୈନ୍ୟର ହାତଗୋଡ଼ ଯେବେ ଟିକଏ ଚଳୁଥାନ୍ତା ତେବେ ଜଗୁଆଳ କଥା କଣ, ଯେ କେହି ଡାକ୍ତରଙ୍କୁ ମଧ୍ୟ ଅଟ ଆପଣାର ଦେହ ମୁଣ୍ଡ ସମ୍ଭାଳି ସରେ ତାଙ୍କୁ ପରୀକ୍ଷା କରିବାକୁ କହନ୍ତା ।

ଅବଶ୍ୟ ନିତାନ୍ତ ବିକାରଗ୍ରସ୍ତ ନ ହେଲେ ୧୬୫ ଦିନ କୌଣସି ଲୋକ ଖାଲି ହାତ ଗୋଡ଼ ପ୍ରୟୋଗ କରିବାକୁ ସୁଯୋଗ ପାଇବ ନାହିଁ । ଯେଉଁମାନେ ଯୁଦ୍ଧ କରନ୍ତି ତାଙ୍କୁ ମଧ୍ୟ ବହୁ କାଳ ବିଶ୍ରାମ କରି ଥରେ ଅଧେ ଯୁଦ୍ଧ ଭୂଇଁରେ ଓହ୍ଲାଇବାକୁ ହୋଇଥାଏ । ଇଂଲଣ୍ଡ, ଆମେରିକା ଓ ରୁଷିଆ ପ୍ରଭୃତି କେତୋଟା ଦେଶର ସୈନ୍ୟ-ମାନେ ତ ଗଲା ମହାଯୁଦ୍ଧ ପରଠାରୁ ପ୍ରାୟ କୋଡ଼ିଏ ବର୍ଷ ହେବ ଖାଲି ଲେଫ୍ଟ ରାଇଟ୍ ଛଡ଼ା ଆଉ କିଛି ଉଲ୍ଲେଖଯୋଗ୍ୟ କାମ କରି-ଥିବାର ଶୁଣା ନାହିଁ । ସ୍ପେନ୍ ଦେଶରେ ଯେଉଁ ରାଜନୈତିକ ଘର-କଜିଆ ଲାଗିଛି ତାହାରି ସମ୍ଭାଲମାମୀକୁ ଦେଖାଯାଏ, ତହିଁରେ ମରି ଯୋଉଛନ୍ତି ଦଶ ଲକ୍ଷ ଏବଂ ଖଣ୍ଡିଆ ଓ ଅକର୍ମଣ୍ୟ ହୋଇ ପଡ଼ିଛନ୍ତି

ଏହି ସଂଖ୍ୟାର ସ୍ୱାଦ ଦୁଇ ଗୁଣ । ଆମ୍ଭେମାନେ ସ୍ପେନ୍ ଦେଶର ଅନେକ ଦୂରରେ ବେଶ୍ ନିରାପଦରେ ଅଛୁଁ । ଆମ ନିଜର କିମ୍ବା କେହି ବନ୍ଧୁ ସ୍ୱଜନର କିଛି କ୍ଷତି ଘଟି ନାହିଁ । ତେଣୁ ସ୍ପେନ୍ ବା ସାଂଘାଇର ଯୁଦ୍ଧ ଖବର ପାଇବା, ମଲା ଓ ଖଣ୍ଡିଆଙ୍କର ସଂଖ୍ୟା ଜାଣିବା, ଆମ ପାଇଁ ବେଶ୍ ସ୍ପନ୍ଦନ ପୂର୍ଣ୍ଣ ଓ ଉପଭୋଗ୍ୟ ହୋଇ-ପାରେ । ସେମିତି କିଛି ଖବର ନ ଥିଲେ 'କିଛି ନାହିଁ' କହି ଖବର କାଗଜକୁ ତାଚ୍ଛିଲ୍ୟ କରିପାରୁଁ । କିନ୍ତୁ ଯେଉଁମାନେ ଅସଲ ଯୁଦ୍ଧ କରନ୍ତି, ଅନ୍ୟଙ୍କୁ ହାଣନ୍ତି ବା ନିଜେ ହାଣ ଖାନ୍ତି, ତାଙ୍କ ଭିତରୁ ଅତି ଅଳ୍ପ ଖବର କାଗଜ ପଢ଼ନ୍ତି ବା ପଢ଼ି ଜାଣନ୍ତି । ଯେ ବା ପଢ଼ନ୍ତି, ସ୍ପନ୍ଦନ ଅନୁଭବ କରିବାର କ୍ଷେତ୍ର ତାଙ୍କର ଅତି ସଂକୀର୍ଣ୍ଣ ଓ ନିର୍ଦ୍ଦିଷ୍ଟ ଏବଂ କୌଣସି ସ୍ପନ୍ଦନର ବଶବର୍ତ୍ତୀ ହୋଇ ଅନ୍ୟ ଅପରିଚିତ ଲୋକଙ୍କୁ,—ଯାହା ସଙ୍ଗେ କେବେ ହେଲେ ନିଜର ଶତ୍ରୁତା ନାହିଁ କି ନ ଥିଲା,—ଆଖି ବୁଜି ହତ୍ୟା କରନ୍ତି ନାହିଁ । କାରଖାନାର କୁଲି ଯେମିତି କଳପାଖେ ଛିଡ଼ା ହୋଇ କାମ କରେ, କୃଷୀ ଯେମିତି ବିଲରେ ହଳ ବୁଲାଏ, କିରାନି ଯେମିତି ଅଫିସ ଘରେ ଫାଇଲ ଘାଣ୍ଟେ ତାଙ୍କର ମଣିଷ ମାରିବା କାମ ସେମିତି । ମାତ୍ର ଦେଶପ୍ରେମର ସ୍ପନ୍ଦନ ଖାଲି ଅଳ୍ପ କେତେ ଜଣ ଖବରକାଗଜ ପଢ଼ୁଆଙ୍କୁ ଗ୍ରାସ କରି ଥାଏ ।

ସୈନ୍ୟ ବିଭାଗରେ ମଧ୍ୟ ଯେଉଁମାନେ ନାମ ଲେଖାନ୍ତି, ସେମାନେ ସମସ୍ତେ ହିଁ ଚାକିରି ଓ ଖାତିର ପାଇବା ପାଇଁ ତାହା କରନ୍ତି । ଦେଶ ପାଇଁ ଆତ୍ମବଳି ଦେବାର କାହାର ଉଦ୍ଦେଶ୍ୟ ଥାଏ, ସେ ସମ୍ବନ୍ଧେ ଏ ଯୁଗରେ ଅତି ଅଳ୍ପ ବିବରଣ ପ୍ରକାଶିତ ହୋଇଅଛି । ବରଂ ଯେଉଁମାନେ ଯୁଦ୍ଧ ଭୂଇଁରେ ଓହ୍ଲାନ୍ତି, ଯେଉଁ ଶ୍ରେଣୀରୁ ସୈନ୍ୟମାନଙ୍କୁ ନିଆଯାଏ ଏବଂ ସମଗ୍ର ପୃଥିବୀର ଏ ମୁଣ୍ଡ

ସେ ମୁଣ୍ଡ ଯାଏ ଯାହାଙ୍କ ସଂଖ୍ୟା ପନ୍ଦର ପଣରୁ ବେଶି ପଛେ କମ୍ ନୁହେ, ସେମାନେ ପ୍ରାୟ ଶାନ୍ତିପ୍ରିୟ ବୋଲି ଅନେକ ବନ୍ଧରଣୀ ଆଖି ଆଗରେ ପଡ଼େ । ପୃଥିବୀ ଉପରର ଏହି ବହୁ ଏବଂ ଅଧିକାଂଶ ହିଁ ଯୁଦ୍ଧ ନାଁ ଶୁଣି ଭୟ କରନ୍ତି, ହଣାମରାଠାରୁ ଦୂରରେ ରହିବାକୁ ଲୋଡ଼ନ୍ତି । କେଉଁ ଦେଶର ସ୍ତ୍ରୀ ଆପଣା ବାପ ଭାଇ ପିଲା ଛୁଆଙ୍କୁ ନେଇ ଦୁଃଖ ଓ ଅଭାବର ଘରଟିରେ ହସ ଖୁସି କରୁଥିବା ବେଳେ ଆକାଶର ଚଢ଼କ ପଡ଼ି ପର କ୍ଷଣରେ ତାହାକୁ ଘରଛୋଡ଼ାହୀନ ଏବଂ ତାହାଙ୍କୁ ପ୍ରାଣହୀନ ଦେଖି, ଦେଶ ପାଇଁ ବା ସେମିତି କୋଉଠାଏ କିଛି ବଡ଼ ଆଦର୍ଶ ଯୋଗୁଁ ଏମାନେ ତ୍ୟାଗ କଲେ ବୋଲି ତୃପ୍ତି ପାଇବ ? ଦିନଯାକ ପରିଶ୍ରମ ପରେ ଘର ଭିତରେ ଶାନ୍ତିରେ ଶୋଇଥିବା ବେଳେ କେଉଁ ପୁରୁଷ ସ୍ୱପ୍ନ ଅଧରେ ଆପଣା ପୁଅ ଝିଅଙ୍କ ରକ୍ତରେ ଭାସୁଥିବାର ଦୃଶ୍ୟ ସୁଖକର ମଣିବ ?

ଭାରତର ଶତକଡ଼ା ନବେ ଲୋକ ଯେ ଗରିବ ଏବଂ ପୃଥିବୀ ଲୋକ ସଂଖ୍ୟାର ଏହିପରି ବା ଏଥିରୁ କିଛି କମ ଅନୁପାତ ଲୋକ ଯେ ଅଭାବ ଅନଟନ ଭିତରେ ଯୁଗ ଯୁଗ ଧରି ତୁନି ହୋଇ ପଡ଼ିଛନ୍ତି, ପୁଣି ଯେତେ ସ୍ଲୋଗାନ୍ ତାଙ୍କ ଆଗେ ଗାଇଲେ ହେଁ ତାଙ୍କ ଟେଙ୍କସାଳି ଠେକା ପିଟିଲେ ପରି ତାହା ସେମାନଙ୍କ ଶାନ୍ତ ମନୋଭାବକୁ ବିଚଳିତ କରିବା ଯେ ସହଜ ନୁହେଁ, ଏଥିରୁ ବଳି ତାଙ୍କ ଶାନ୍ତିପ୍ରିୟତାର ବଡ଼ ପ୍ରମାଣ କଣ ଆଇପାରେ ?

ସମାଜତତ୍ତ୍ୱ ଗବେଷଣା କରୁଥିବା କେହି କେହି ମତ ଦିଅନ୍ତି, ପୃଥିବୀରେ ଯେତେ କିଛି ଅଶାନ୍ତି ଓ ଗଣ୍ଡଗୋଳ, ତାହା ଅତି ଅଳ୍ପ ସଂଖ୍ୟକ ଲୋକ ହିଁ ଘଟାଇ ଥାନ୍ତି ଏବଂ ସେ ସମସ୍ତେ ପ୍ରାୟ ଆଦର୍ଶ-ବାଦୀ । ଦେଶ ବା ଜାତି ପ୍ରେମର ଦୋହାଇ ଦେଇ ଏହି କେତେ ଜଣ

ଆଦର୍ଶବାଦୀ ହିଁ ପୃଥିବୀରେ ଯେଉଁ ଭୀଷଣ ପୈଶାଚିକ ଘଟଣା ଘଟିବାର କାରଣ ହୋଇ ଅଛନ୍ତି, ଗୋଟି ଗୋଟି କରି ତାହାକୁ ବାଛି ବସିଲେ ଚୋପ କେହି ଶୁଣି ତାଜ୍ଜବ ହେବ । ଯେତେ ସକଳ ବୀଭତ୍ସ ନିର୍ମମ ଓ ନିଗ୍ରହ ହେଲେ ମଧ୍ୟ ସତ୍ତାଟାକୁ ସ୍ୱପନ୍ନରେ ଘୋଡାଇ ରଖିବା ପାଇଁ ଆଦର୍ଶବାଦର ସୁନ୍ଦର ସୁକୁମାର ଓ ଶିତ୍ତ୍ୱାକର୍ଷକ ଘୋଡ଼ଣିଟିଏ ବୋଧହୁଏ ଆଉ ଦ୍ୱିତୀୟ ନାହିଁ । ଗଲା ମହାଯୁଦ୍ଧଟାକୁ ସବୁ ଦେଶର ସବୁ ଶ୍ରେଣୀ ଲୋକ ନିନ୍ଦା କରନ୍ତି । ଲେଖକ ଓ ସମ୍ପାଦକମାନେ ଏହି ବର୍ବରତାକୁ ସଭ୍ୟ ମନୁଷ୍ୟ ପରିତ୍ୟାଗ କରିବା ପାଇଁ ଶହେ ମୁହଁରେ ଘୋଷିଚନ୍ତି । ସବୁ ଦେଶର ବକ୍ତା ଓ ରାଜନୀତିଜ୍ଞମାନେ ଭବିଷ୍ୟତ ଯୁଦ୍ଧକୁ ଏଡ଼ିବା ପାଇଁ ପ୍ରବୋଚନା ଦେଉଚନ୍ତି । ନିରସ୍ତ୍ରୀକରଣର ସଭା ବସି କେତେ ଆଲୋଚନା ହୋଇ ଯାଇଚି । ତଥାପି ୧୯୧୮ ମସିହା ନଭେମ୍ବର ମାସଠାରୁ ୨୦ ବର୍ଷ ହେଲା ପ୍ରତି ଦେଶର ମୃତ ସୈନିକଙ୍କୁ ସମ୍ମାନ ଦେଖାଇବାକୁ ମହା ସମାରୋହରେ ସବୁ ଦେଶରେ ଉତ୍ସବ କରା ଯାଉଅଛି । ଏବଂ ପ୍ରକାରାନ୍ତରେ ଆଗାମୀ ଯୁଦ୍ଧ ପାଇଁ ସବୁ ଦେଶର ଲୋକଙ୍କୁ ଉତ୍ସାହ ଦେବାରେ ତ୍ରୁଟି ନାହିଁ । ଧର୍ମ ଓ ନୈତିକତାର ଆଦର୍ଶ ଛଳରେ ଦୈନିକ ହଜାର ଟା ଠକାମୀ ପ୍ରତି ଲୋକଙ୍କୁ ଅଙ୍ଗେ ନିଭାଇବାକୁ ପଡ଼ୁଚି ଏବଂ ତାହାକୁ ପ୍ରାଚୀନ ସ୍ୱତ ଛଳରେ ରଖି ଦେଇ ରକ୍ଷା ପାଇବାକୁ ହୁଏ ତ ଗୋଟାଏ ବାଟ ଅଛି । କିନ୍ତୁ ଏ ରୂପ ଉଦ୍ଭଟ ଯେ ପୃଥିବୀ ଉପରେ ସର୍ବଶ୍ରେଷ୍ଠ ସୁସଭ୍ୟ, ସୁଶିକ୍ଷିତ, ସୁବିସ୍ତୃତ ବୋଲି ଜାଣିଥିବା ଜାତିମାନଙ୍କର ସୁଚିନ୍ତିତ କାମ, ପୁଣି ସବୁକାଳ ଡାକି ଢୋଲ ପିଟି ସବୁ ଦେଶରେ ପାଳିତ ହେଉଅଛି, ଏ କାମ ପାଇଁ କ୍ଷମା ଖୋଜିବାକୁ ଗଲେ ବିଶ୍ୱବ୍ରହ୍ମାଣ୍ଡର କେଉଁ କୋଣରେ ତାହା ମିଳିବ ?

ପୃଥିବୀର ଏହି ଅଳ୍ପ-ସଂଖ୍ୟକ ଆଦର୍ଶବାଦୀଙ୍କୁ ବୁଦ୍ଧିଜୀବୀ ଶ୍ରେଣୀରେ ଧରି ଯାଇ ପାରେ । ଏମାନେ ନିଜେ ହାଡ଼ଭଙ୍ଗା କଠିନ କାମ କରିବାକୁ ଯେତେ ପାରଗ ନୁହନ୍ତି, ଅନ୍ୟକୁ ତାହା କରିବାକୁ ଫୁସୁଲାଇ ପାରିବାରେ ବେଶି ତତ୍ପର । ଅତି ବଡ଼ ଧନୀ ଓ ବ୍ୟବସାୟୀ ମାଲିକମାନଙ୍କ ପରି ଏମାନେ ଛୁଞ୍ଚା ଧୂଙ୍ଗୁଡ଼ି ପକାଇ ବେଶି ଭୋଜନରେ ମଜନ୍ତି ନାହିଁ, କିନ୍ତୁ ଯାହାଙ୍କର କିଛି ନାହିଁ ତାଙ୍କୁ ନିରାହାରରେ ମରିବା ପାଇଁ ଉତ୍ସାହ ଉତ୍ତେଜନା ଦିଅନ୍ତି ବେଶ । ନିଜର ମରିବାକୁ ସୁବିଧା ସାହସ ନ ଥିବାରୁ ଅନ୍ୟକୁ ମାରିବାପାଇଁ ତିଆରି କରନ୍ତି । କିଛି ସ୍ପଷ୍ଟ ଜାଣିବା ଛଡ଼ା ସେମାନେ ଆଉ କିଛି ଜାଣନ୍ତି ନାହିଁ, ଅବଶ୍ୟ ସବୁ ବେଳେ ଆପଣାର ଦେହକୁ ଓ ଧନ ସମ୍ପତ୍ତିକୁ ଜଗି ରଖି । ଚତୁରତା ଗୁଣରେ ଯଥାର୍ଥରେ ସୁଇଁ ଶିଙ୍ଗୁଡ଼ି ଭଳନ୍ତି ଏହିମାନେ; କାରଣ ଉକ୍ତ ଶ୍ରେଣୀର ସବୁ ଗୁଣ ପ୍ରାୟ ସବୁ ଶିଙ୍ଗୁଡ଼ି ଭାରିଭାର ବାନ୍ଧ ।

ମଫସଲ ଗାଁରେ ଟାଉଟରିଗିରି କରିବାଠାରୁ ଆରମ୍ଭ କରି କୋର୍ଟ କଚେରିରେ ଓକିଲାତି ଏବଂ ବ୍ୟବସ୍ଥା ସଭା କିମ୍ବା ପାର୍ଲି-ମେଣ୍ଟରେ ରାଜନୈତିକ ବାକ୍‌ସ୍ଫୂର୍ତ୍ତି କରିବା ପର୍ଯ୍ୟନ୍ତ ଏହି ସୁଇଁ-ଶିଙ୍ଗୁଡ଼ି ଶ୍ରେଣୀର ଲୋକ ଭର୍ତ୍ତି ହୋଇ ଅଛନ୍ତି । କଥାର ଲୁତୁରିରେ କଠୋର କର୍କଶ ବାସ୍ତବକୁ ମଧ୍ୟ ଏକ କୋମଳ ମୁଲାୟମ ଘୋଡ଼ଣି ଭିତରେ ସଜାଇ ଦେଖାଇବାକୁ ଏମାନେ ଅଭ୍ୟସ୍ତ । ଲକ୍ଷ ଲକ୍ଷ ଭଙ୍ଗା କୁଡ଼ିଆର ସ୍ତବନଧି ହୋଇ ସରକାରୀ ରାଜଧାନୀଗୁଡ଼ିକର କୋଠା ବାଡ଼ି କଶକ୍ୟ ଠେକ୍ ଯେମିତି ଏକ ନିର୍ଲ୍ଲଜ ଘୋଡ଼ଣୀର କାମ କରିଥାଏ, ଏ ସବୁ ହାସଲ କରିବାକୁ କଥାର କାଇଦା ତାଙ୍କର ବଡ଼ ଅସ୍ତ୍ର । କୌଣସି ବିଷୟରେ ତାଙ୍କର ନିଜର ପାଣ୍ଡିତ୍ୟ ବା ଅଭିଜ୍ଞତା ଦରକାର ନାହିଁ, କାରଣ ସବୁ ବିଷୟରେ ପଣ୍ଡିତ ଓ

ଅଭିଜ୍ଞ ଲୋକର ପରାମର୍ଶ ପାଇବା ସବୁବେଳେ ତାଙ୍କ ହାତପାହ୍ୟାନ୍ତରେ । ଇତିହାସ, ବିଜ୍ଞାନ, ସାହିତ୍ୟ, ଯାହା ଖୋଜନ୍ତୁ ସବୁ ବିଷୟରେ ସତ୍ତାରେ ତାଙ୍କୁ ପରାମର୍ଶ ମିଳିପାରେ । ଆଜ ତେବେ କଣ ଦରକାର ତାଙ୍କର ? ଶିକ୍ଷା-ବିଜ୍ଞାନ ? ସେଥିପାଇଁ ବଡ ବଡ ଶିକ୍ଷା ବ୍ୟବସାୟୀ ବା କର୍ମଗୁରୁଙ୍କର ତ ଅଭାବ ନାହିଁ । ଆଇନ କାନୁନ ? ବିଶ୍ୱବିଜ୍ୟରେ ପ୍ରଧାନ ବିଶାରଦ, ଏଡ୍ଭୋକେଟ୍ ଜେନେରାଲ ବା ଲିଡ଼ କାଉନ୍‌ସେଲର ସେଥିପାଇଁ ନିଯୁକ୍ତ ଅଛନ୍ତି । ଧର୍ମ, ଦର୍ଶନ, ଏପରିକି ସଙ୍ଗୀତ ସମ୍ବନ୍ଧେ ମଧ୍ୟ ତାଙ୍କର ଗଭୀର ଜ୍ଞାନ ଅର୍ଜନ କରିବାର କି ଗରଜ ଅଛି ? ଆଉ କଣ ଧନ ? ଧନର ପୁଣି କି ଅଭାବ ?

ଧନିକମାନଙ୍କର ଧନରକ୍ଷାସୁରକ୍ଷା ଯେ ତାଙ୍କର ବଡ଼ କାମ !— ଖାଲି ଅଶିକ୍ଷିତ ଚୋରର ଡକାଏତଙ୍କ ଆକ୍ରମଣରୁ ନୁହେ, ଶିକ୍ଷିତ ଭଦ୍ରଲୋକଙ୍କ ଆକ୍ରମଣରୁ ମଧ୍ୟ । ଯଥାର୍ଥରେ ବଡ଼ ବଡ଼ ମିଲ୍‌ମାଲିକ ବ୍ୟବସାୟୀ ଓ ବ୍ୟାଙ୍କରମାନଙ୍କର ଏଜେଣ୍ଟି କରନ୍ତି ଏହିମାନେ, ଏବଂ ପୃଥିବୀରେ ପ୍ରାୟ ସବୁ ସ୍ୱାଧୀନ ଦେଶ ହିଁ ପ୍ରଧାନତଃ ସେହି ଧନିକମାନଙ୍କ ଅଧୀନରେ ରହିଥିବାରୁ ବ୍ୟବସାୟୀଙ୍କ ସ୍ୱାର୍ଥକୁ ଜଟିବା ପାଇଁ ପୁଣି ଆଜ ସବୁ ଦେଶରେ ତାଙ୍କର ଚାକ ଗୁଡ଼ିକ ଭଲ ଭାବେ ଘଇ ଏହି ସରକାରୀ ଏଜେଣ୍ଟ ଅନ୍ୟ ଦେଶ ଏଜେଣ୍ଟଙ୍କ ସଙ୍ଗେ ସଭା କରନ୍ତି, ଆଲୋଚନା କରନ୍ତି, ତର୍କ କରନ୍ତି, ଚୁକ୍ତିପତ୍ର ଲେଖି ତହିଁରେ ଦସ୍ତଖତ କରନ୍ତି, ଏବଂ ପର ମୁହୂର୍ତ୍ତରେ ଦରକାର ପଡ଼ିଲେ ଗୋଟାଏ ଚୁକ୍ତିକୁ ଚିରି ଅନ୍ୟ ଏକ ଦେଶ ସଙ୍ଗେ ଆଉ ଗୋଟିଏ ଚୁକ୍ତିରେ ନାଁ ଲେଖନ୍ତି । କିମ୍ବା କୌଣସି ଚୁକ୍ତି ଦ୍ୱାରା ସିଦ୍ଧାନ୍ତ ସମ୍ଭବ ନ ହେଲେ, ସବୁ ଚୁକ୍ତି ଦଳି ତା' ସଙ୍ଗେ ମଣିଷର ମସ୍ତିଷ୍କ ଓ ବିଶ୍ୱର ବୁଦ୍ଧିକୁ ମଧ୍ୟ ଉତ୍ସର୍ଗ କରନ୍ତି, ଆଦମ କାଳରୁ

ସରକାର ଏକମାତ୍ର ଦେହ ଓ ଧନ ବଳ ଉପରେ । କାରଣ ସେଥିରେ ତାଙ୍କ ନିଜର କିଛି କ୍ଷତି ନାହିଁ । ଧନିକର ଧନ ହାନି ଓ ଶ୍ରମିକର ପ୍ରାଣହାନି ହିଁ ସବୁ ଲଢ଼େଇର ଶେଷ ଫଳ ହୋଇ-ଥାଏ । ଯେଉଁମାନେ ଧନ କମାନ୍ତି, ଆଉ ଯେ ଧନ ଜମାନ୍ତି ସେହିମାନେ ହିଁ ଯୁଦ୍ଧ ଭୂଇଁରେ ସୈନିକ ହୋଇ ମରନ୍ତି କମ୍ବା ଯୁଦ୍ଧର ସବୁ ଖର୍ଚ୍ଚ ତୁଲନ୍ତି । ଅଥଚ ଯୁଦ୍ଧ ହେବା ନ ହେବାର ବିଚାର ବ୍ୟବସ୍ଥା ଏହି ସରକାରୀ ଏଜେଣ୍ଟମାନଙ୍କ ମର୍ଜି ଉପରେ ହିଁ ନିର୍ଭର କରେ ।

ଇଂଲଣ୍ଡ, ଆମେରିକା, ଜାପାନ, ଜର୍ମାନୀ ଆଦି ନାମଜାଦା ବ୍ୟବସାୟୀ ଦେଶମାନଙ୍କର ସରକାର ଗୁଡ଼ି କହୁ ପୂଛୁ ଜାଣିଲା ଏଜେଣ୍ଟମାନଙ୍କଦ୍ୱାରା ହିଁ ଚଳୁଥିବାର ଦେଖାଯାଏ । ଅବଶ୍ୟ ଜାପାନ, ଜର୍ମାନୀ, ଇଟାଲି, ତୁର୍କି ବା ଚୀନ୍ ସରକାରର ଶାସକ-ମାନେ ଖାଲି କହୁ-ପୂଛୁ-ଜାଣିଲା ଲୋକ ନୁହନ୍ତି । ଭଲ ରୂପେ ହାତଗୋଡ଼ ଚଳାଇବା ବିଷୟରେ ମଧ୍ୟ ସେମାନେ ଧୁରନ୍ଧର । ସେଥିପାଇଁ ତାଙ୍କ ଦ୍ୱାରା ପରର ହାତଗୋଡ଼ ଛିଡ଼ିବାର ଭୟ ଯେମିତି ଅଛି, ଆପଣାର ହାତଗୋଡ଼ ଭାଙ୍ଗିବାର ଆପଦ ମଧ୍ୟ ସେଥିରୁ କମ୍ ନୁହେଁ । ନିଜର ପୁଇଁ-ଶଗୁଡ଼ି ବିକିବା ପାଇଁ ସେମାନେ ଖାଲି ମୁହିଁ ନୁହେଁ, ଦେହକୁ ମଧ୍ୟ ବିସର୍ଜନ ଦେଇ ପାରନ୍ତି । ଅବଶ୍ୟ ସଦ୍ୟ ସାହସ ପାଇଁ ସେମାନେ ସାବାସର ଯୋଗ୍ୟ ହେଲେହେଁ, ପକ୍କା ବ୍ୟବସାୟୀ ହିସବରେ ତାଙ୍କ ଥାନ ଇଂଲଣ୍ଡ ଓ ଆମେରିକାର ଅନେକ ତଳେ । କାରଣ ଇଂଲଣ୍ଡ ଆମେରିକା ପରି କହୁ ପୂଛୁ ଜାଣିବାର କାଏଦାକୁ ପୂରା ହାସଲ କରି ଦେଖିବାର ଯୋଗ୍ୟତା ସେମାନେ ଅର୍ଜ୍ଜି ନାହାନ୍ତି । କହୁ କହୁ ପଦ ପଦକେ ହାଣମାର ଓ ଲଢ଼େଇ କଥା ତାଙ୍କ ମୁହଁରୁ ବାହାରି ପଡ଼େ, ଶଗଡ଼ି ବିକିବା କଥା

ଏକାବେଳେ ସାଙ୍ଗୋର ଯାଏ । ମଝିରେ ମଝିରେ ଭାରତବର୍ଷର ନାମ ବିଦେଶୀ ପତ୍ର ପତ୍ରିକାରେ ଆଜ କାଲି ଦେଖିବାକୁ ମିଳୁଥିଲେ ହେଁ ଏ ସବୁ ଦେଶ ସଙ୍ଗେ ତାହାର ତୁଳନା ହୋଇ ନ ପାରେ । କାରଣ ତାହାର ବାସ୍ତବ ସ୍ୱରୂପ ଯାହା ଅଛି, ସେ ଖାଲି ଗୋଟାଏ ଛାୟା ମାତ୍ର । ଏହି ଛାୟା ବା ମରୀଚିକା ଭିତରେ ଯେତିକି ସତ୍ୟ ସବୁବସ୍ତୁ ସେ ଆଜିଯାକେ ପାଇଛନ୍ତି. ଚଉଁରେ ଗାଁ ପଧାନଠାରୁ ଆରମ୍ଭ କରି ପ୍ରଧାନମନ୍ତ୍ରୀଙ୍କ ପର୍ଯ୍ୟନ୍ତ କହି ପୁଛି ଜାଣିବାକୁ ଚେଷ୍ଟା କରୁଥିବାର ଏଥି ଭିତରେ କେତେକ ପ୍ରମାଣ ମିଳିଛି ।

କିନ୍ତୁ ସେ ପ୍ରମାଣ ଭାରତର କବିତା ଦର୍ଶନ ଅବା ବିଦ୍ୟା-ଚର୍ଚ୍ଚାଠାରୁ ବଡ଼ ପ୍ରମାଣ ନୁହେ । ଭାରତର ପୁରୁଣା ତୀର୍ଥ ଓ ମନ୍ଦିର ପରି ତାହାର ଅତୀତ ବିଦ୍ୟାଚର୍ଚ୍ଚାରେ ମଧ୍ୟ କିଛି ବାସ୍ତବତା ଥିଲା । ଏ କଥା ପୃଥିବୀ ମାନଚିତ୍ରରେ ଭାରତର ବର୍ତ୍ତମାନ ଛାୟାଟେ ଅବୃତ ଥିଲେହେଁ ତାହାର କଥିତ ସବୁଟଯ୍ ଯେ କବିତା ଓ ଗୀତ ରଙ୍ଗରେ ପ୍ରକାଶିତ ହୋଇଅଛି, ଏ କଥା ଅସ୍ୱୀକାର୍ଯ୍ୟ ନୁହେ । ସାହିତ୍ୟ ଓ ବିଜ୍ଞାନ କ୍ଷେତ୍ରରେ ଏ ଯୁଗରେ କେତେ ଜଣ କୃତୀ ବ୍ୟକ୍ତିଙ୍କର ନାମ ଦେଶର ସୀମା ପାର ହୋଇଅଛି । ଅର୍ଥାତ୍ ଆଖିରେ ପଡ଼ିବା ଭଳି ବସ୍ତୁ ଭାରତବର୍ଷରେ ଯଦି କିଛି ଥାଏ, ତା' ହେଲେ ସହିଲେ ଏହି ବିଦ୍ୟା ଚର୍ଚ୍ଚାକୁ ହିଁ ଧରିବାକୁ ହେବ । ହାତ ଗୋଡ଼ ଚଳାଇବା ସମ୍ବନ୍ଧେ ଶିଶୁଠାରୁ ମଧ୍ୟ ସେ ହୀନ, କହି ପୁଛି ଜାଣିବାକୁ ବାକି ଅଛି ତାର ହେବ । ପ୍ରବନ୍ଧର ଆଦ୍ୟରେ ଯେଉଁ ଶ୍ରେଣୀ ବିଭାଗ କରାଯାଇଥିଲା, ତାହା ଅନୁସାରେ ଭାରତବର୍ଷର ସ୍ଥାନ ଦ୍ୱିତୀୟ ଶ୍ରେଣୀରେ ; ତାହାର ମୁହଁ ବା ହାତ ଗୋଡ଼ର ବ୍ୟବହାର ସବୁଠୁଁ କମ୍ ।

ଭାରତର ସବୁ କିସମର ଦେବତା-ଗୋଠରେ ବିଦ୍ୟାର ଦେବତାଙ୍କୁ ଯେମିତି କଳ୍ପନା କରାଯାଇଛି, ସେଥିରୁ ଆଦର୍ଶ ଓ ଅଭିଜାତ୍ୟକୁ ଏ ଦେଶବାସୀ ଧର୍ମତଃ ମାନି ଚାଲି ଆସିଛି । ତେଣୁ ହୁଏ ତ ସେ କମାଢ଼ାର ଗଜାନନ ଅବା ଲମ୍ବୋଦର ସାଙ୍ଗ ମୂଷିକ ବାହନ ଉପରେ ତିନି ବ୍ରହ୍ମାଣ୍ଡ ବୁଲୁଥିବାର କଳ୍ପନା କରୁଛି, ନଇଲେ ବୀଣାବାଦିନୀ ବାଣୀଙ୍କର ନାସ୍ତ୍ୱ ପାଖେ ମୁଣ୍ଡ ନୁଆଁଇ ରହୁଛି । ଯେତେ ବିଦ୍ୟା-ବାଗୀଶ ହେଲେହେଁ ତାହାର ଆଦର୍ଶ ଏହିପରି ସ୍ଥାଣୁ ବା ଅଚଳ କମ୍ମା ଏ ଦେଶର ନାସ୍ତି ପରି ତାହାର ଲକ୍ଷ୍ୟ ଜଣେ ସଚଳ ସବଳ ଅଣସୂଦାତା ସ୍ୱାମୀ । ବିଦ୍ୟା ଚର୍ଚ୍ଚା ଅବସ୍ଥାରେ ଗଢ଼ି ତାହାକୁ ଏହି ରୂପ ଆଦର୍ଶ ଓ ଲକ୍ଷ୍ୟ ଯୋଗ ଗତି କରିବାକୁ ହେଉଅଛି । କାରଣ ତୁଚ୍ଛା ବିଦ୍ୟାଚର୍ଚ୍ଚାର ଫଳ ସାଧାରଣତଃ ଏହା ହିଁ ହୋଇଥିବାର ଦେଖାଯାଏ । ଏହି ଗୋଟିଏ ଦିଗରୁ ବିଚାର କଲେ ଭାରତବର୍ଷ ପୃଥିବୀର ଆଉ ସବୁ ଦେଶ ତୁଳନାରେ ନିହାତି ପଛରେ ନୁହେଁ । ମେଧାବୀ ହିସାବରେ ଏ ଦେଶର ଛାତ୍ର ଅନ୍ୟ କୌଣସି ଦେଶ ଛାତ୍ରଠାରୁ ଅଳ୍ପ ପାଠ ମନେ ରଖିପାରେ ନାହିଁ, ଆପଣା ଦେଶର ମହତ୍ତ୍ୱ ଓ ମର୍ଯ୍ୟାଦା ଅଳ୍ପ ବୁଝେ ନାହିଁ, ମୂର୍ଖାମୀ ହିସାବରେ ମଧ୍ୟ ଏ ଦେଶର ସରକାରୀ ବା ବେ-ସରକାରୀ ଚାକରିଆ ଅନ୍ୟ କୌଣସି ଦେଶର ଚାକରିଆଠାରୁ କମ୍ ପାଠ ପାସୋରି ପାରେ ନାହିଁ ; ବେହୟା ବେଇଜ୍ଜତ ହେବା ପାଇଁ ବି କାହାରଠାରୁ ସେ କମ୍ ପ୍ରସ୍ତୁତ ନୁହେଁ, ଗୁଲଖ ହିସାବରେ ଏ ଦେଶର ଓକିଲ, ଡାକ୍ତର, ବ୍ୟବସ୍ଥା ସଭାର ସଭ୍ୟ ବା ମେମ୍ବର ଜକାଏତ ଯେମିତି, ବୋକାମୀରେ ମଧ୍ୟ କୌଣସି ଦେଶର ପଣ୍ଡିତ ବା ଧନିକଠାରୁ ଏ ଦେଶର ଧନିକ ବା ପଣ୍ଡିତର ଦକ୍ଷତା ଊଣା ନୁହେଁ ।

ତଥାପି ପୃଥିବୀର ଅନ୍ୟ ସବୁ ଦେଶ ସଙ୍ଗେ ଏ ଦେଶ ଯେ ସମାନ କଚ୍ଛ ପକାଇ ପାରୁ ନାହିଁ, ତାହାର କାରଣ ଅନ୍ୟ ବାଟ ନ ଥିବାରୁ ଏଠା 'ମୁଖିଆ' ଲୋକଙ୍କର ମୁଖର ଅଭାବ ବୁଝିବାକୁ ହେବ । କବି, ପଣ୍ଡିତ, ବୈଜ୍ଞାନିକ, ଦାର୍ଶନିକ, ନାୟକ, କଳ କାରଖାନା ବା ଜାହାଜ ଏରୋପ୍ଲେନର ଗୁଣିଆ ଏ ଦେଶରେ ଅଭାବ ହେବେ ନାହିଁ । ଏ ଦେଶ ଲୋକେ ପୃଥିବୀର ଅନ୍ୟ କେଉଁ ଦେଶ-ଠାରୁ ଶିଳ୍ପ ବାଣିଜ୍ୟ ଉଦ୍ଭାବନ ଆବିଷ୍କାର ଦିଗରେ ନିହାତି ପଛରେ ପଡ଼ିବେ ନାହିଁ । ଯେଉଁ ଦିଗରେ ଯାହା ଅଭାବ ଥିବ, ତାହାକୁ ପୂରଣ କରିବାକୁ ମଧ୍ୟ ତାଙ୍କୁ ବେଶି ସମୟ ଲାଗିବ ନାହିଁ । ସେ ସବୁ ବିଭାଗରେ ଲୋକଙ୍କୁ ଶିକ୍ଷା ଦେବା କଠିନ ନୁହେଁ, କିମ୍ବା ବାହାରରୁ ଭଡ଼ାଟିଆ ଲୋକ ଆଣି କାମ ଚଳାଇବାକୁ ମଧ୍ୟ ଅସୁବିଧା ନାହିଁ । କିନ୍ତୁ ଏ ଦେଶପାଇଁ ମୁହଁ ପିଟାଇ କହି ପୁଚ୍ଛି ଜାଣିବାକୁ, ଗାଲୁଆ, ବେହିଆ, ମୂର୍ଖ ବା ମିଛୁଆ ହେବାକୁ ବିଦେଶୀ ଲୋକ ମିଳିବେ ନାହିଁ । ତାହା ଏହି ଦେଶର ଲୋକଙ୍କୁ ହିଁ ଅଭ୍ୟାସ କରିବାକୁ ପଡ଼ିବ ।

ଏ କଥାଟା ଜାତି ବିଷୟରେ ଯେମିତି, ବ୍ୟକ୍ତି ସମ୍ବନ୍ଧେ ମଧ୍ୟ ସେପରି । ପୃଥିବୀର ଅନ୍ୟ ସବୁ ଦେଶ ସଙ୍ଗେ ଭାରତବର୍ଷର ତୁଳନା କଲେ ଯାହା ଦେଖୁଁ, ଭାରତର ଅନ୍ୟ ସବୁ ପ୍ରଦେଶ ସଙ୍ଗେ ଓଡ଼ିଶାର ତୁଳନା କଲେ ମଧ୍ୟ ସେଇଆ । ଓଡ଼ିଶାର ଅନ୍ୟ ଅଭାବ ଯାକ ବୋଧହୁଏ ଗୌଣ ହୋଇ ପଡ଼ନ୍ତା; ସେ ଯେବେ ମାନ୍ଦ୍ରାଜ, ବଙ୍ଗ, ବିହାର ପ୍ରଭୃତି ପ୍ରଦେଶମାନଙ୍କ ସଙ୍ଗେ ଖାଲି ଟିକିଏ ଚତୁରତାର ସହିତ କହି ପୁଚ୍ଛି ଜାଣନ୍ତା ।

---

## ଦୁଃଖୀ ଭାରତ ନା ସୁଖୀ ଭାରତ

### ଦାୟୀ କିଏ ?

ଏ ଯାଏଁ ପୃଥିବୀର ନାନା ଧର୍ମ ଭିତରେ ହିନ୍ଦୁ ବୋଲି ଯେଉଁମାନେ ପରିଚିତ, ସେମାନଙ୍କ ପୌରାଣିକ କାବ୍ୟ ରାମାୟଣରେ ଅଛି—ରାମ ରାଜତ୍ୱ ସମୟରେ ଜଣେ ବ୍ରାହ୍ମଣର ପୁଅଟିଏ ଅକାଳରେ ମରିଗଲା । ଏମିତି ଅସ୍ୱାଭାବିକ ଘଟଣା ପାଇଁ ବୁଦ୍ଧିମାନ୍ ବ୍ରାହ୍ମଣ ରାଜାଙ୍କୁ ହିଁ ଦାୟୀ ସ୍ଥିର କଲେ । ହିନ୍ଦୁର ଆଦର୍ଶ ରାଜା ରାମଚନ୍ଦ୍ର ଏ ଅପ୍ରାକୃତିକ ଘଟଣାର କାରଣ ସ୍ୱରୂପ ତାଙ୍କ ରାଜ୍ୟରେ ଜଣେ ଶୂଦ୍ର ତପସ୍ୟା କରୁଥିବାର ଜାଣି ପାରି ବ୍ରାହ୍ମଣଙ୍କ ଦୁର୍ଭାଗ୍ୟର ପ୍ରତିକାର ନେଇଁ ପହଲେ ଅନଧିକାର ଚର୍ଚ୍ଚା କରୁଥିବା ଲକ୍ତ ଶୂଦ୍ର ମୁନିଙ୍କ ବେକ କାଟି ଥିଲେ । ହିନ୍ଦୁ ଗ୍ରନ୍ଥରେ "ରାମରାଜ୍ୟ" ବୋଲି ଯେଉଁ କଥା ଶୁଣାଯାଏ, ସେ ରାଜୁତିରେ ଶୂଦ୍ରଙ୍କର ଏମନ୍ତ କାମ ପାଇଁ ଲକ୍ତ ଦଣ୍ଡ ବିହିତ ଥିଲା ।

ବୈଶ୍ୟଙ୍କର ଏମନ୍ତ ଅପରାଧ ଯୋଗୁଁ ବେକ କାଟ ବା ଆଉ କିଛି ଶାସ୍ତି ଥିଲା କି ନାହିଁ, ଜଣା ନାହିଁ । ତାହା ହୋଇଥିଲେ ଏବଂ ବର୍ତ୍ତମାନ ୧୯୩୭ ମସିହା ଶେଷରେ ଭାରତରେ ରାମରାଜ୍ୟ ବିରାଜିତ ଥିଲେ, ବୋଧହୁଏ ସବା ଆଗ ବୈଶ୍ୟକୁଳଜାତ ମୋହନ ଦାସ

କରମଚାନ୍ଦ ଗାନ୍ଧୀଙ୍କୁ ଏକ ଶକ୍ତ ଦଣ୍ଡ ଭୋଗିବାକୁ ପଡ଼ନ୍ତା । କାରଣ ବହୁ ମତରେ ସେ ଜଣେ ତପସ୍ୱୀଙ୍କ ନ୍ୟାୟ ମହାପୁରୁଷ । ଅବଶ୍ୟ ଜାତରେ ବୈଶ୍ୟ ହୋଇ ଜନ୍ମିଥିବା ଅପରାଧରେ ନ ହେଲେ ହେଁ ଏତେବ ଇଂରେଜ ରାଜୁତିରେ ସେ ଦଣ୍ଡ ବା ଶାସ୍ତିରୁ ବାହି ପାଇ ନାହାନ୍ତି; ଏବଂ ଉପର ଉଦାହରଣ ନ୍ୟାୟରେ ଯେଉଁମାନେ ଇଂରେଜ ରାଜୁତିକୁ ରାମରାଜ୍ୟ ବୋଲି ପ୍ରଶସ୍ତି କରଥାନ୍ତି, ତାଙ୍କ ପକ୍ଷରେ ଗାନ୍ଧୀଜୀଙ୍କ ଦଣ୍ଡ ଭୋଗକୁ ସମର୍ଥନ କରିବା ସହଜ ।

ତାହାହେଲେ କିନ୍ତୁ ସେହି ନ୍ୟାୟରେ ହିଁ ସେମାନଙ୍କୁ ମାନିବାକୁ ହେବ ଯେ ରାଜ୍ୟରେ ଯାହା କିଛି ଦୁର୍ଘଟଣା ଘଟୁ, ଶିଶୁମୃତ୍ୟୁ, ଯୁବକମୃତ୍ୟୁ ବା ପ୍ରସୂତିମୃତ୍ୟୁଠାରୁ ଆରମ୍ଭ କରି ଜ୍ୱର ବା ଅଜୀର୍ଣ୍ଣ ରୋଗୀଙ୍କର ସବୁ ଭଲ ମନ୍ଦ ପାଇଁ ରାଜା ଦାୟୀ । ବାସ୍ତବିକ ଉପର ଉପାଖ୍ୟାନଟିରେ ଶୂଦ୍ର ମୁନିଙ୍କୁ ହତ୍ୟାକରିବା ଯେମିତି ଅଧମ ଭାବ, ଅଜ୍ଞତା ଅନ୍ଧକାରର ଓ ଦୁର୍ବୁଦ୍ଧି ପ୍ରକାଶ କରେ, ମଣିଷର ସବୁ ଅଭାବ ଅଭିଯୋଗ ପାଇଁ ରାଜାଙ୍କୁ ଦାୟୀ କରିବା ଠିକ୍ ସେମିତି ଆଧୁନିକ ଭାବ, ଅଜ୍ଞତା, ଅନ୍ଧକାରର ଓ ଦୁର୍ବୁଦ୍ଧିର ପରିଚୟ ଦିଏ ।

ମଣିଷର ସବୁ ରକମ ଦୁଃଖ ଦୁର୍ଦ୍ଦଶା ପାଇଁ ରାଜାଙ୍କୁ ବା ରାଜ ସରକାରକୁ ଦାୟୀ କରାଯିବାର ପ୍ରମାଣ ଓ ଉଦାହରଣ ଦୈନିକ ଖବର କାଗଜ ଓ ସଭା ସମିତିର ବକ୍ତୃତାରେ ଏତେ ବେଶି ଆଖିରେ ପଡ଼େ ବା ଶୁଣାଯାଏ ଯେ, ଏଠାରେ ତାହାର ତାଲିକା ଦେବା ଦରକାର ନାହିଁ । ରାଜା ବା ରାଜ୍ୟ ବୋଲି ଜନପଦ ନାହୁଁ ଅଛିକି, ରାଜାପ୍ରଜାର ସମ୍ବନ୍ଧ ପଢ଼ିଲେ କଅଣ ଥିଲା, ଏବଣି କିମିତି, କେବେଠାରୁ ରାଜା ପ୍ରଜା ବୋଲି ଦୁଇଟା ପକ୍ଷ ହେଲେ, ପୁଣି ରାଜା ତଳକୁ ଲର୍ଡ଼, ଜମିଦାର, ସୁବାଦାର, ସର୍ବରାକାର ବା ଧନୀ ବ୍ୟବସାୟୀ ଆଦି କପର ଗୋଟିଏ

ଲୋକଙ୍କ ସ୍ଥାନ ମାତ୍ର ରହିଲେ; ଜ୍ୟୋତିଷୀ, ତନ୍ତ୍ରୀ ବା ମୋହନ୍ତ, ବଡେଇଙ୍କ ସ୍ଥାନ କାହିଁକି କେଉଁଠି ହେଲା ଏବଂ ରାଜ୍ୟ ବା ରାଜା ସଙ୍ଗେ ଏମାନଙ୍କର ଦାୟିତ୍ୱ ଓ ଅଧିକାର କଅଣ, ପୁଣି ରା ୍ୟ ଉପରେ ସମ୍ରାଜ୍ୟ ଅସିଲା କିପରି, କ ଭାବରେ ଧନ-ଭକ୍ତି ସଙ୍ଗେ ଦେବ-ଭକ୍ତି, ରାଜ-ଭକ୍ତି ସଙ୍ଗେ ଦେଶଭକ୍ତି ଏବଂ ସବୁ ରକମ ଭକ୍ତିର ମାତ୍ରା ବଢ଼ିବା ଅନୁପାତରେ କଳି, ବିବାଦ, ହିଂସା, ହତ୍ୟା, ମାରପିଟ ଓ ଲଢ଼େଇର ମାତ୍ରା ବଢ଼ି ଚାଲିଲା—ସବୁ ବିଷୟର ଉଚିତ ଆଲୋଚନା ପାଇଁ ଗୋଟିଏ ଛୋଟ ପ୍ରବନ୍ଧ ଯଥେଷ୍ଟ ନୁହେଁ ।

ତଥାପି ଏ ସବୁର ଗୋଟାଏ ମୋଟାମୋଟି ଧାରଣା ନ କଲେ ତାହାର ପକ୍ଷେ ନିଜର ପାଖ ପଡ଼ୋଶୀ ପାଞ୍ଜଣଙ୍କର କିମ୍ବା ଦେଶର ଦୁଃଖ ଦୁର୍ଦ୍ଦଶା ବୁଝିବାକୁ ଠିକ୍ ରୂପେ ସମର୍ଥ ହେବାର ସମ୍ଭାବନା ନାହିଁ । ଜ୍ୟୋତିଷୀମାନଙ୍କ ମତରେ, ଆମର ଏହି ପୃଥିବୀ ଗ୍ରହ ପାଖରେ ଯେଉଁ ଗ୍ରହ ଉପଗ୍ରହ ଗୁଡିକର ଗତିବିଧି ଅଛି, ସେମାନେ ମଧ୍ୟ ଅଦୃଶ୍ୟ ଭାବେ ମଣିଷର ଭାଗ୍ୟ ନିର୍ଣ୍ଣୟ କରିଥାନ୍ତି । ଅଥଚ ଏହି ଗ୍ରହଟି ଭିତରେ ଯେଉଁ ସବୁ ଦୃଶ୍ୟ କାରଣ ଦ୍ୱାରା ସାଧାରଣର ସୁଖ ଦୁଃଖ ତିଆରି ହେଉଛି, ସେ ଗୁଡ଼ିକୁ ଟିକିଏ ଆଖି ମେଲି କରି ଦେଖିବା ଦରକାର ନୁହେଁ କି ? ଏହି ଗ୍ରହଟି ଭିତରେ ରହି ଆମେ ଯେତେ ବର୍ଣ୍ଣ, ଯେତେ ଜାତି ବା ଯେତେ ଜାତି ମଣିଷ ଚଳ ପ୍ରଚଳ ହେଉଥାଉଁ ଏବଂ ତାହାର ଭିତରେ ମଧ୍ୟ ଶନି, ବୁଧ ବା ମଙ୍ଗଳ ଗ୍ରହ ପରି କେଉଁଠି ରାମରାଜ୍ୟ ବା କେଉଁଠି ରାବଣରାଜ୍ୟ ତଳେ କୋଟି କୋଟି ଲୋକଙ୍କର ଭାଗ୍ୟ ଗଢ଼ା ହେଉଛି, ସେ କଥାକୁ ଟିକିଏ କାନ ପାତେଇ ଶୁଣିବା ଦରକାର ନୁହେଁ କି ? ପୁଣି ପୃଥିବୀ ଭିତରେ ଆମର ଯେଉଁ ମାଟି ସଙ୍ଗେ ସବୁଠୁ ନିକଟତମ

ସମ୍ବନ୍ଧ ଏବଂ ଯେଉଁ ଦେଶର ଭାଗ୍ୟ ସଙ୍ଗେ ଆମ ବ୍ୟକ୍ତିଗତ ଭାଗ୍ୟର ମଧ୍ୟ ସଧା ସଂଯୋଗ ବିଦ୍ୟମାନ, ସେହି ଭାରତବର୍ଷର ଅବସ୍ଥା ଠିକଏ ବିଚାରିବା ଦରକାର ନୁହେଁ କି ?

## ଦୁଃଖ ସୁଖ ବା ରାଜନୀତି—

ଜନସାଧାରଣ ଭାଗ୍ୟ ସ୍ଥିର କରିବା ପାଇଁ ରାଷ୍ଟ୍ର ଉପଗ୍ରହଙ୍କ ଗତି ବିଧି ବୁଝିବାକୁ ଯେପରି ଦରକାର ସେହିପରି, ନିଜର ଦୈନିକ ଦାରିଦ୍ର୍ୟ ଶରୀର ଜୀବନର ଅଭାବଠାରୁ ଆରମ୍ଭ କରି ପୁତ୍ରଶୋକ ପର୍ଯ୍ୟନ୍ତ ଦୁଃଖ ଅଭିଯୋଗ ଗୁଡ଼ିକୁ ବୁଝିବ ଲାଗି ସେମିତି ନିଜ ଦେଶ ସଙ୍ଗେ ପୃଥିବୀର ଅନ୍ୟ ସବୁ ଦେଶ ଗୁଡ଼ିକର ସମ୍ବନ୍ଧ ଓ ସମ୍ପର୍କ ବୁଝିବା ଆବଶ୍ୟକ—ଅନ୍ୟ କଥାରେ ସେ ଟାଏ ସାଙ୍ଘାତିକ ବିଷୟର ଆଲୋଚନା ଆସି ପଡ଼ିଯାଏ—ରାଜନୀତି । ଅବଶ୍ୟ ରାଜନୀତି ଚର୍ଚ୍ଚା କରିବାକୁ ଅର୍ଥାତ୍ ନିଜର ଦୁଃଖ ଦୁର୍ଦ୍ଦଶା ବୁଝିବାକୁ ପୃଥିବୀର ନାନା ଦେଶରେ ମାତ୍ର ଅଳ୍ପ କେତେ ଜଣଙ୍କର ସୁବିଧା ଥିବାର ଦେଖାଯାଏ ଏବଂ ତାହାଦ୍ୱାରା ବିପତ୍ତି ସାଙ୍ଘାତିକ ହେବାର ଆଶଙ୍କା ଥାଏ ନାହିଁ । କାରଣ ଉକ୍ତ ଅଳ୍ପ କେତେ ଜଣଙ୍କର ନିଜର ଦୁଃଖ ଦୁର୍ଦ୍ଦଶା ବୋଲି କିଛି ନାହିଁ । ଭାରତର ନେହରୁ, ପଟେଲ୍, ପାନ୍ଥ, ଶାସ୍ତ୍ରୀ, ଜିନ୍ନା, ଲିୟାକତଠାରୁ ଆରମ୍ଭ କରି ବିଲାତର ଚର୍ଚ୍ଚିଲ ଚେମ୍ବରଲେନ୍ କିମ୍ବା ଅନ୍ୟ ଦେଶର ହିଟଲର, ରୁଜଭେଲଟ୍ ପ୍ରଭୃତି ଯେଉଁ ଅଳ୍ପ କେତେଜଣଙ୍କର ନାୟକତ୍ୱ ରାଜନୀତି କ୍ଷେତ୍ରରେ ଶୁଣାଯାଏ, ସେମାନଙ୍କର ଆପଣା ଦୁଃଖ ଅଭାବ ମଧ୍ୟ ଏତେ କମ୍ ଯେ ରାଜନୀତି ଚର୍ଚ୍ଚାକୁ ବିଳ ସ-ଚର୍ଚ୍ଚା ରୂପେ ଗ୍ରହଣ କଲେ ବି ତାଙ୍କର କ୍ଷତି ନାହିଁ ଏବଂ କ୍ଷତି ହେଲେ ତାହାକୁ ପୂରଣ କରି ଦେବାକୁ ମଧ୍ୟ ଭାବନା ନାହିଁ । ଆପଣାର ଦୁଃଖ ଅଭାବ ନ ଥିବାରୁ ଏହି ଅଳ୍ପ

କେତେ ଜଣ ଭାଗ୍ୟଶାଳୀ ରାଜନୀତି-ଚର୍ଚ୍ଚାକାରୀଙ୍କର ପରଦୁଃଖ-କାତର, ତ୍ୟାଗୀ, ନିସ୍ୱାର୍ଥପର, ଦେଶପ୍ରେମୀ, ଦେଶସେବକ ଆଦି ସୁନାମ ଅର୍ଜିବାକୁ ମଧ୍ୟ ସୁବିଧା ଥାଏ ।

କିନ୍ତୁ ଯେଉଁମାନେ ଦୁଃଖ ଶୋକ ଛଡ଼ା ଦୁନିଆରେ ଆଉ ଦ୍ୱିତୀୟ ସତ୍ୟ ଥିବାର ଜାଣନ୍ତି ନାହିଁ ଏବଂ ସ୍ୱାସ୍ଥ୍ୟ-ସମୃଦ୍ଧି ପାଇ-ବାକୁ ଚାହିଲେ ଯାହାଙ୍କର ଶାଳ ସ୍ୱର୍ଗକୁ ନ ଯାଇ ଉପାୟ ନାହିଁ, ପୃଥିବୀରେ ସେହି ଅଧିକ ସଂଖ୍ୟକ ଲୋକ ଯଦି ଏକ ସଙ୍ଗରେ ନିଜ ଦୁଃଖ ଦୁର୍ଦ୍ଦଶା ଚର୍ଚ୍ଚା କରନ୍ତି, ତାହାହେଲେ ରାଜନୀତି ରାଜ-ଦ୍ରୋହରେ ପରିଣତ ହୋଇ ପଡ଼ିବାର ଭୟ ଅଛି । ମଣିଷ ସମାଜର ପରିସ୍ଥିତି ଏମିତି ବିଚିତ୍ର ଯେ, ବେଶି ଲୋକଙ୍କର ହିଁ ଦୁଃଖ ଦୁର୍ଦ୍ଦଶା ସବୁଠୁଁ ବେଶି ଏବଂ ତାଙ୍କର ନିଜ ଦୁର୍ଦ୍ଦଶା ବର୍ଣ୍ଣନ କରିବାର ଅର୍ଥ ସହଜେ ଅଳ୍ପ ଲୋକଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଉପରେ ଅବିଚାର କରିବା ହୋଇ ପଡ଼େ । ଏହି କାରଣରୁ ହିଁ ପ୍ରାୟ ସବୁ ଦେଶରେ ସରକାର ଜନସାଧାରଣଙ୍କୁ ଆପଣାର ଦୁଃଖ ଦୁର୍ଦ୍ଦଶା ଆଲୋଚନା କରିବା ପାଇଁ ନାନା ରକମ ଆଇନ କଟକଣା ଭିତରେ ରଖିଥାଏ । କାରଣ ସରକାର ବୋଇଲେ ଏହି ଅଳ୍ପ ଲୋକଙ୍କର ସମ୍ପତ୍ତିକୁ ବା ସୁଖ-ସ୍ୱାଚ୍ଛନ୍ଦ୍ୟକୁ ବିଶେଷ ରୂପେ ବୁଝାଏ ।

ଯାହାହେଉ, ବର୍ତ୍ତମାନର ସୁଖଦୁଃଖପୂର୍ଣ୍ଣ ଘଟଣାରାଶିର ଅର୍ଥ ଯେ ରାଜନୀତି ଏବଂ ଅତୀତ ହେଲେ ତାହାର ନାମ ଯେ ଇତି-ହାସ ହୋଇ ପଡ଼େ, ଏ କଥାର ପ୍ରମାଣ ଇତିହାସ ବା ରାଜ-ନୀତିର ଛାତ୍ରଙ୍କୁ ଅଜଣା ନୁହେଁ । ଅବଶ୍ୟ ଇତିହାସ ଚର୍ଚ୍ଚା ପାଇଁ ଯେଉଁ ସ୍ୱାଧୀନତା ଥାଏ, ରାଜନୀତି ପାଇଁ ତାହା ନାହିଁ । କାରଣ ବର୍ତ୍ତମାନଠାରୁ ଅତୀତଟା କେବେ ହେଲେ ବଡ଼ ସଂକଟ ନୁହେଁ ।

ଅତୀତର ଯେ କୌଣସି ରାଜା ବା ରାଜତ୍ୱକୁ ତୀବ୍ରତମ ସମାଲୋଚନା କର ମଧ୍ୟ ଇଉନିଭରସିଟିର ସବୁଠାରୁ ଭୀରୁ ଛାତ୍ର ବେଶି ନମ୍ବର ରଖି ସରକାରୀ କଚେରୀ-ଘରେ ଗୋଟିଏ ଭଲ କଲମ-ପେଶା [ pen-pusher ] କାମ ପାଇପାରେ, କିନ୍ତୁ ବର୍ତ୍ତମାନ ରାଜା ବା ତାଙ୍କ ରାଜତ୍ୱକୁ ସେମିତି ସମାଲୋଚନା କଲେ କଏଦୀ ଘରେ ଘଣା ପେଲିବାଠାରୁ ଅଧିକ ଭଲ କାମ କେତେ ଜଣଙ୍କୁ ମିଳିବ ? ରାଜନୀତି ସଙ୍ଗେ ଧର୍ମନୀତି ବା ଅର୍ଥନୀତି ପ୍ରଭୃତିର ସମ୍ପର୍କ ଏମିତି ଘନିଷ୍ଠ ଯେ ଯେଉଁମାନେ ଟିକିଏ ଶାନ୍ତ ସ୍ୱାଚ୍ଛନ୍ଦ୍ୟ ଲୋଡ଼ନ୍ତି, ତାଙ୍କ-ସବୁ ଅତୀତ ବା ଇତିହାସକୁ ହିଁ ପଳାଇବାକୁ ହୋଇଥାଏ । ବର୍ତ୍ତ-ମାନର ପ୍ରଚାର-ଚାପ ସେମାନଙ୍କର ଅସହ୍ୟ ହୁଏ ବୋଲି ଅନେକଙ୍କୁ ପୁରୁଣା ସାହିତ୍ୟ, ପୁରୁଣା ପଦ୍ଧତି ବା ପୁରୁଣା ସାଙ୍ଗୁଡ଼ିକୁ ନିର୍ବି-ଚାରରେ କୁଣ୍ଢାଇ ପଡ଼ିଥିବାର ଦେଖାଯାଏ ।

## ଫ୍ରାନ୍‌ସର କୌଳୀନ୍ୟ—

ତଥାପି ବର୍ତ୍ତମାନର ସୁଖଦୁଃଖ ଓ ପ୍ରଖର ବାସ୍ତବର ଆଘାତକୁ ସ୍ପଷ୍ଟ ପ୍ରଦର୍ଶନ ନ କରି ଥୋକେ ଲୋକ ନାଇଁ ଯିବାରେ ତାହାର ସମ୍ମୁ-ଖୀନ ହୁଅନ୍ତି । ଖୋଜି ବସିଲେ ଏ କଥାର ଛୋଟ ଛୋଟ ଉଦାହରଣ ମୁଠାଏ ମିଳି ପାରେ, କିନ୍ତୁ ଐତିହାସିକ ଉଦାହରଣ ସଂଖ୍ୟା ଅତି କମ୍ । ଯଥାର୍ଥ ଐତିହାସିକ ଘଟଣା ରୂପେ ଧରିବାକୁ ଗଲେ ପୃଥିବୀ-ଇତିହାସରେ ସାଧାରଣ ଭାବରେ ବହୁ ଲୋକ ଆପଣାର ଦୁଃଖ ସୂଚା-ଇବାକୁ କରିବାର ଘଟଣା ୧୫୦ ବର୍ଷରୁ ଖୁବ୍ ବେଶି ନୁହେଁ ଏବଂ ଫ୍ରାନ୍‌ସ ଦେଶ ହିଁ ଏ କ୍ଷେତ୍ରରେ ପହିଲେ ମଶାଲ ଜାଳିଥିଲା । ୧୭୮୯ ଖ୍ରୀଷ୍ଟାବ୍ଦରେ ସେ ଦେଶରେ ଯେଉଁ ବିପ୍ଳବ-ନିଆଁ ଜଳି ଉଠିଲା, ତାହାର ଉତ୍ତାପ ପୃଥିବୀସାରାରେ ହିଁ ବାଜିଛି ବୋଲି ମାନିବାକୁ ହେବ । ଦେବଣ

ବର୍ଷ ଆଗେ "ସାମ୍ୟ ମୈତ୍ରୀ ଓ ସ୍ୱାତନ୍ତ୍ର୍ୟ" (Liberty, Equality and Fraternity) "ସର୍ବ ଅଧିକ ଲୋକ ସଂଖ୍ୟାର ସର୍ବ ଅଧିକ କଲ୍ୟାଣ" Greatest good of the greatest number ପ୍ରଭୃତି ଯେଉଁ ସବୁ ସ୍ଲୋଗାନ୍ ସେ ଦେଶର ରାଜନୈତିକ ଆକାଶକୁ ମୁଖରିତ କରିଥିଲା, ଆଜି ମଧ୍ୟ ତାହା ପୃଥିବୀରେ ପୁରୁଣା ହୋଇ ନାହିଁ। ଖାଲି ଯେ ଶିରଚ୍ଛେଦିତ ରାଜତନ୍ତ୍ର ଶାସନ ବଦଳରେ ସାଧାରଣ ତନ୍ତ୍ରର ପ୍ରତିଷ୍ଠା କରି ପୃଥିବୀର ଶାସନ ପଦ୍ଧତିରେ ଫ୍ରାନ୍ସ ନୂଆ ବାଟ ଦେଖାଇଥିଲା, ସେତିକି ନୁହେଁ, ସାହିତ୍ୟରେ, ସଭ୍ୟତାରେ, ଚିନ୍ତାରେ, କର୍ମରେ, ତାହା ସମଗ୍ର ଇଉରୋପ ଖଣ୍ଡରେ ମଧ୍ୟ ଆଦର୍ଶସ୍ଥାନୀୟ ହୋଇ ଉଠିଥିଲା। ଏବେ ସୁଦ୍ଧା ସେ ଆଦର୍ଶ ସମ୍ପୂର୍ଣ୍ଣ ଲୋପ ହୋଇ ଯାଇ ନାହିଁ। ଏବେ ସୁଦ୍ଧା ଇଉରୋପର ପ୍ରତି ଦେଶରେ ଦୌତ୍ୟକାର୍ଯ୍ୟ କ୍ଷେତ୍ରରେ ଫରାସୀ ଭାଷାର ଯେମିତି ଚଳି ଅଛି, ସମ୍ଭ୍ରାନ୍ତ ଲୋକେ ମଧ୍ୟ ସସମ୍ମାନରେ ଏହି ଭାଷାରୁ ସଦେ ଅଧେ ବ୍ୟବହାର କରିଥାନ୍ତି। ଏବେ ସୁଦ୍ଧା ଫରାସୀ ରୁଚିବୋଧ, ଆଚାର ବ୍ୟବହାର, କଥା କହିବା ବା ଲୋକଙ୍କ ସଙ୍ଗ ଇତ୍ୟାଦିର କୌଳିନ୍ୟ ଲୋପ ପାଇ ନାହିଁ। ଏବେ ସୁଦ୍ଧା ଫ୍ରାନସର ଇଞ୍ଜିନିୟରିଂ କୌଶଳର ବିଶାଳତାର ପ୍ରତୀକରୂପେ ସୁଏଜ ପ୍ରଣାଳୀ ବିଦ୍ୟମାନ।

ଏ ସତ୍ତ୍ୱେ ମାନିବାକୁ ହେବ ଯେ, ପୃଥିବୀର ସାତୁଟା ପହିଲା ନମ୍ବର ଶକ୍ତି ଭିତରେ ଫରାସୀ ସରକାର ପରି ଦୁର୍ବଳ ସରକାର ଦ୍ୱିତୀୟ ନାହିଁ। ୧୯୧୮ ମସିହାରୁ ଅର୍ଥାତ୍ ମହାଯୁଦ୍ଧର ଅବସାନ ପରେ ଗ୍ରେଟ୍‌ବ୍ରିଟେନ୍‌ରେ ଯେତୋଟି ସରକାରର ପରିବର୍ତ୍ତନ ଘଟିଛି, ସେଗୁଡ଼ିକର ସଂଖ୍ୟା ସାତ; ଜର୍ମାନୀରେ ହିଟଲରଙ୍କ ଏକଚ୍ଛତ୍ର ଚାନ୍‌ସେଲର ହେବା ପର୍ଯ୍ୟନ୍ତ ସୁମାର କଲେ ତେରଟି ସରକାର ଶାସନ ଚଳାଇ ଗଲେଣି; ଅଥଚ ଫ୍ରାନସରେ ଡାଲେଡ଼ିୟରଙ୍କ

ମୌଳିକବାଦୀ ମନ୍ତ୍ରୀତ୍ୱ (Radical Ministry) କୁ ମିଶାଇ ତୁଅନ୍ତା, କମ୍-ସେ-କମ୍ ଚଉଦଗଟି ସରକାର —ସମସ୍ତେ ମାତ୍ର ପନ୍ଦରଟି ବର୍ଷ ଭିତରେ ! ପୁଣି ତାହା ମଧ୍ୟରୁ ଅନେକ ସଂଖ୍ୟକ ସରକାରର ପରମାୟୁ ଅଳ୍ପ କେତୋଟି ଦିନରେ ସରି ଯାଇଅଛି । ଗୋଟିଏ ହେଲେ ସରକାର ଇଂଲଣ୍ଡରେ ୧୯୨୪ ମସିହାର ସାଧାରଣ ନିର୍ବାଚନ ପରେ ବଲ୍‌ଡୁଇନ୍‌ଙ୍କ ମନ୍ତ୍ରୀତ୍ୱ କାଳର ସମାନ ପରମାୟୁ ପାଇ ପାରି ନାହିଁ । କ୍ଲିମେଁଶୁ, ପଏଁକର ବା ବ୍ରିଏଣ୍ଡ୍‌ଙ୍କ ମନ୍ତ୍ରୀତ୍ୱକାଳ ତାହା ଭିତରେ ସବୁଠୁଁ ବେଶି ବୋଲି ଧରିବାକୁ ହେବ ; ଅଥଚ ତାହା ଦୁଇ ତିନି ବର୍ଷରୁ ବେଶି ନୁହେ ।

କିନ୍ତୁ ସରକାର ଦୁର୍ବଳ ବୋଲି ଫରାସୀ ଜାତି ଯେ ବଳହୀନ ହୋଇ ପଡ଼ିଛି, ତାହା ନୁହେ । ପୃଥିବୀ ଭିତରେ ଆଧୁନିକ ସମରର ଶ୍ରେଷ୍ଠ ସରଞ୍ଜାମ ଯୁଦ୍ଧ-ଏରୋପ୍ଲେନ୍‌ର ସଂଖ୍ୟା ଆଜି କେଉଁ ଜାତିର ଅଧିକ ? କେଉଁ ଦେଶର ସୈନ୍ୟ ବାହିନୀ ଅଧିକ ବିଚକ୍ଷଣତା ଓ ରଣ-କୌଶଳ ଦାବୀ କରି ପାରେ ? ତଥାପି ସେ ଦେଶର ସରକାର ଅନ୍ୟ ଦେଶ ତୁଳନାରେ ଦୁର୍ବଳ ବା ଅଳ୍ପାୟୁଷ ହେବାର ପ୍ରମାଣ ସ୍ୱରୂପ ଫରାସୀ ଜନସାଧାରଣର ରାଜନୈତିକ ଚେତନା ବୋଲି କେହି କେହି ଅର୍ଥ କରନ୍ତି । ଫରାସୀ ଲୋକେ କୌଣସି ନୂଆ ଶାସନ-ନୀତିର ବର୍ତ୍ତମାନ ପକ୍ଷପାତୀ ନ ଥିବାରୁ ଗୋଟିଏ ସର-କାରକୁ ବେଶି ଦିନ ତିଷ୍ଠିବା ପାଇଁ ଦେବାକୁ ନାରାଜ । ପୁଣି, ନୂଆ ରକମ ସରକାରର ଅର୍ଥ ଅନେକ କ୍ଷେତ୍ରରେ ନୂଆ ରକମ୍ ଟାକ୍ସ ହୋଇ ପଡ଼ୁଥିବାରୁ କୌଣସି ସରକାରକୁ ସେ ଦୀର୍ଘାୟୁ ଉପଭୋଗ କରିବା ପାଇଁ ସମୟ ନ ଦେବାକୁ ସେମାନେ ତତ୍ପର । ଆଉରି ମଧ୍ୟ ରାଜନୈତିକ ଚେତନାରେ ସମ୍ୟକ୍ ଉଦ୍‌ବୁଦ୍ଧ ହେଲେ ଲୋକେ ଯେ

କୌଣସି ରକମ ସରକାର ପ୍ରତି ଯେ ସନ୍ତୁଷ୍ଟ ହେବେ ନାହିଁ ଏବଂ ସବୁବେଳେ ପରିବର୍ତ୍ତନ ଓ ନୂତନର ପକ୍ଷପାତୀ ହେବେ, ଉକ୍ତ ପ୍ରମାଣ ମଧ୍ୟ ସେଠାରୁ ମିଳିଥାଏ । କିନ୍ତୁ ସରକାରର ଘନ ଘନ ପରିବର୍ତ୍ତନ-ଦ୍ୱାରା ଫ୍ରାନ୍‌ସର କୌଣସି ମୌଳିକ କ୍ଷତି ଘଟି ନାହିଁ । କାରଣ ସେଠାରେ ଅମଲା ତନ୍ତ୍ର ଏ ରୂପ ଦୃଢ଼ ଭାବରେ ପ୍ରତିଷ୍ଠିତ ଯେ ମନ୍ତ୍ରୀଙ୍କ ବଦଳରେ ତାହାର ଭିତରଟା ଆଲୋଡ଼ିତ ହେବାର ଆଶଙ୍କା ନାହିଁ । ତେଣୁ ସରକାର ଦୁର୍ବଳ ହେବା ସଙ୍ଗେ ସଭ୍ୟତା ଓ କୃଷ୍ଟିର ଦୃଢ଼ ପ୍ରତିଷ୍ଠା ହେବାର କିଛି ସମ୍ପର୍କ ଅଛି କି ନାହିଁ ଏବଂ ବାଇଜାଣ୍ଟିନ୍, ବେବିଲୋନୀୟ, ରୋମକ, ଚୈନ ବା ଭାରତୀୟ ପ୍ରାଚୀନ ସଭ୍ୟତାଗୁଡ଼ିକର ପ୍ରତିଷ୍ଠା ସଙ୍ଗେ ସେ ଦେଶମାନଙ୍କର ସରକାରଗୁଡ଼ି ଦୁର୍ବଳ ଓ ଲୋପ ହେବାରେ କିଛି ଐତିହାସିକ ତଥ୍ୟ ଅଛି କି ନା, ତାହା ପ୍ରମାଣ କରିବା ପାଇଁ ଫ୍ରାନ୍‌ସ୍ ଦେଶକୁ ଏ କ୍ଷଣି ଉଦାହରଣ ରୂପେ ଧରିଯାଇ ନ ପାରେ ।

## ମହାଯୁଦ୍ଧ ପରେ—

ମହାଯୁଦ୍ଧ ପରେ ଫରାସୀ ସରକାର ଯେପରି ଲୋଟାଳ-ପରିବର୍ତ୍ତନ ଘଟିଲା, ଅନ୍ୟ କେତେ ଦେଶର ସରକାରରେ ମଧ୍ୟ ତାହାଠାରୁ ବେଶି ଚମକପ୍ରଦ ପରିବର୍ତ୍ତନ ଘଟି ଯାଇଅଛି । ଯୁଦ୍ଧ ସମୟରେ ପ୍ରତି ଦେଶର ନଜର ଅନ୍ୟ ଦେଶ ଉପରେ ପଡ଼ିଥିଲା, କିନ୍ତୁ ସନ୍ଧି ପରେ ସେ ନଜର ଫେରି ଆସି ନିଜ ଉପରେ ପଡ଼ିଲା । ଜେକୋ-ସ୍ଲୋଭାକିଆ ପ୍ରଭୃତି ଛୋଟ ଛୋଟ ଦେଶର ନଜର ତାହାର ଉପରେ ନ ପଡ଼ି ମଧ୍ୟ ଜାତୀୟତାଳୀୟ ନ୍ୟାୟରେ ସେଗୁଡ଼ିକୁ ସ୍ୱାଧୀନତା ମିଳିଗଲା । ଇଟାଲି, ଜର୍ମାନୀ ଓ ରୁଷିଆ—ତିନୋଟି ଏକ ନମ୍ବର ଶକ୍ତିର ରାଜତନ୍ତ୍ର ଶାସନ ମଉଳି ପଡ଼ିଲା, ଏବଂ ତାହା ଥାନରେ ଉଇଁଉଠିଲା,

ଫ୍ୟାସିଜ୍‌ମ୍ ଓ ନାତ୍‌ସିଜ୍‌ମ୍ ନାମକ ନୂଆ ପ୍ରକାର ଏକ-ତନ୍ତ୍ର ( Dictatorship ) ଶାସନ ଏବଂ ଗଣତନ୍ତ୍ରର ଚରମ-ପ୍ରକାଶ ସାମ୍ୟବାଦ । ଇଉରୋପୀୟ ସଭ୍ୟତାର ଅତି ନିକଟରେ ରହି ତୁର୍କି ଦେଶ ମଧ୍ୟ ଏକତନ୍ତ୍ର ଶାସନକୁ ମାନି ନେଇଅଛି । ଏହିସବୁ ବିଭିନ୍ନ ଦେଶର ଶାସନ ପଦ୍ଧତିରେ ନୀତିଗତ ଫରକ ଅନେକ ଥିଲେହେଁ ଏବଂ ମହାଯୁଦ୍ଧର ଧକ୍କା ବହୁ ପରିମାଣରେ ଏଥିପାଇଁ ଦାୟୀ ହୋଇଥିଲେହେଁ, ଆଜ ମଧ୍ୟ ଇଟାଲି ଦେଶର ଭାଗ୍ୟନିୟନ୍ତା ହୋଇସାରି ୧୯୬୨ ମହିହା ସେପ୍‌ଟେମ୍ବର ମାସରେ ମୁସୋଲିନି ପୁଣି ରାଜତନ୍ତ୍ରକୁ ଜାତୀୟ ଏକତାର ଚିହ୍ନରୂପେ ଘୋଷଣା କରି-ଥିଲେହେଁ, ଏ ସବୁ ଶାସନ ପଦ୍ଧତିର ବିରାଟ ପରିବର୍ତ୍ତନ ମୂଳରେ ଫରାସୀ ବିପ୍ଳବ ଓ ଫରାସୀ ସରକାରର ନୂଆ ରୂପ ( epublic ) ଯେ ପ୍ରଭାବିତ କରିଥିଲା, ତାହା ସହଜରେ ଅନୁମାନ କରାଯାଇ ପାରେ ।

ବର୍ତ୍ତମାନ ଇଉରୋପର ମାନଚିତ୍ରକୁ ଚାହିଁଲେ ଇଟାଲି ଓ ବ୍ରିଟେନ୍ ଦୁଇଟି ପ୍ରଧାନ ଶକ୍ତିକୁ ଛାଡ଼ି ବାକି ଚଉଦଟି ଛୋଟ ଛୋଟ ରାଜ୍ୟକୁ ରାଜତନ୍ତ୍ର ଶାସନ ତଳେ ଧରି ଯାଇ ପାରେ; ବାକି ଫ୍ରାନସ ଜର୍ମାନୀ, ରୁଷିଆ, ପୋଲାଣ୍ଡ, ତୁର୍କି, ସ୍ପେନ ପ୍ରଭୃତି କେତେ ବଡ଼ ଦେଶକୁ ମିଶାଇ ଅଠର ଗୋଟି ଦେଶରେ ସାଧାରଣତନ୍ତ୍ର ଶାସନ ଚଳୁ-ଅଛି । ଅଥଚ ମହାଯୁଦ୍ଧ ପୂର୍ବେ କେବଳ ସୁଇଟ୍‌ଜରଲ୍ୟାଣ୍ଡ, ପର୍ତ୍ତୁଗାଲ ଓ ଫ୍ରାନ୍‌ସ ଛଡ଼ା ଇଉରୋପରେ ସାଧାରଣତନ୍ତ୍ରର ଗନ୍ଧ ମୁଦ୍ଧା ନ ଥିଲା । ରାଜତନ୍ତ୍ର ଓ ସାଧାରଣତନ୍ତ୍ର ନାମ ଦେଇ ସବୁ ଦେଶଗୁଡ଼ିକୁ ମୋଟା ମୋଟି ଦୁଇଟି ଭାଗରେ ଅଲଗା କରି ଦେଲା ବେଳେ ମନେ ରଖିବାକୁ ହେବ ଯେ ସାଧାରଣତନ୍ତ୍ର ଭିତରେ ରୁଷିଆର ସାମ୍ୟବାଦ ଜର୍ମାନୀର ନାତ୍‌ସିବାଦ କିମ୍ବା ଫ୍ରାନ୍‌ସର ପାର୍ଲିମେଣ୍ଟ ପ୍ରଭୃତି ପ୍ରଭୃତି ନାନା ବୈଚିତ୍ର୍ୟ ଯେମିତି ବିଦ୍ୟମାନ, ରାଜତନ୍ତ୍ର ଭିତରେ ମଧ୍ୟ

ଯେମିତି ଇଂଲଣ୍ଡର ପାର୍ଲିମେଣ୍ଟ ଶାସନ, ଇଟାଲୀର ଫାସିଜିମ୍ ଏବଂ ରୁମାଣିଆର ସ୍ୱୟଂ ରାଜାଙ୍କର ମଧ୍ୟ ଏକଚ୍ଛତ୍ର ଶାସନ (Dictatorship) ଦେଖାଯାଏ ।

ଏ ସବୁ ବିଭିନ୍ନ ରକମ ଶାସନକଳ ଚଳାଇବାରେ ଦେଶ ଲୋକଙ୍କର ହାତ କେଉଁଠି କେତେ ରହୁଛି, ଅବା ସର୍ବସାଧାରଣର ଦୁଃଖ ଗୁହାରି ଜଣାଇ ତାହାର ପ୍ରତିକାର ଲୋଡ଼ିବା ସକାଶ କେଉଁ ଦେଶରେ କେତେ ସୁବିଧା ରଖା ଯାଇଛି, ଅନ୍ୟ କଥାରେ କେଉଁ ଦେଶରେ କେତେ ପରିମାଣ ଲୋକଙ୍କୁ 'ମଣିଷ' ବୋଲି ଗଣା ହୋଇ ଭୋଟ ଅଧିକାର ମିଳିଛି ଏବଂ ବହୁ ସଂଖ୍ୟକ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଦୂର କରିବା ଦିଗରେ ସେ ଭୋଟର କ୍ଷମତା କେତେ— ଇତ୍ୟାଦି କଥା ମନେ କଲେ ତେବେ ଯାଇ ସେ ସବୁ ଦେଶ ଗୁଡ଼ିକ ସଙ୍ଗେ ଭାରତବର୍ଷର ତୁଳନା ଆପେ ଆସି ହାଜର ହୁଏ ।

ମହାଯୁଦ୍ଧ ପରେ ଯୁଗୋସ୍ଲାଭିଆ, ଇଟାଲୀ, ଜର୍ମାନୀ, ରୁଷିଆ, ତୁର୍କୀ ପ୍ରଭୃତି ବହୁ ୟୁରୋପୀୟ ଦେଶ ଗୁଡ଼ିକରେ ଆଗ କାଳର ଶାସନତନ୍ତ୍ରକୁ ଲୋକେ ଯେମିତି ଯନ୍ତ୍ରଣା-ଅଖିଦେଇ ଦେଖି ନୂଆ ରକମ ଶାସନ ପାଇଁ ଆନ୍ଦୋଳନ ଆରମ୍ଭ କରି ଦେଲେ, ଯୁଦ୍ଧ ସମ୍ଭୂତ ପ୍ରତ୍ୟକ୍ଷ ଯୋଗ ନ ଥିଲେ ହେଁ ଏସିଆ ମହାଦେଶରେ ଭାରତ, ଚୀନ ଓ ମିଶର ପ୍ରଭୃତି ଦେଶମାନଙ୍କରେ ମଧ୍ୟ ସେହି ପରି ଆନ୍ଦୋଳନର ତେଜ ଖେଳି ଉଠିଲା । ଲେନିନ୍, ମୁସୋଲିନି, ହିଟ୍ଲର, କେମାଲଙ୍କ ପରି ଜାଗ୍‌ଲୁଲ, ଗାନ୍ଧୀ ଓ ସନ୍ୟାତ୍ ସେନଙ୍କର ଅଭ୍ୟୁଦୟରେ ମିଶର, ଭାରତ ଏବଂ ଚୀନ ଦେଶର ମାଟି ଚଞ୍ଚଳ ହୋଇ ଉଠିଲା । ୧୯୨୭ ମସିହାରେ କଲିକତା କଂଗ୍ରେସରେ ଅସହଯୋଗର ସୂତ୍ରପାତ; ୧୯୨୨ ଅକ୍ଟୋବର ମାସରେ ମୁସୋଲିନିଙ୍କ ନେତୃତ୍ୱରେ ଫାସିଷ୍ଟ

ସୈନ୍ୟମାନଙ୍କର ରୋମ ଅଭିଯାନ, ୧୯୬୩ ମସିହାରେ ଜର୍ମାନୀରେ ଜାତୀୟ ସରକାରର ପୂର୍ଣ୍ଣ ପ୍ରତିଷ୍ଠା ଏବଂ ସେହି ବର୍ଷ ଅଷ୍ଟ୍ରିଆରେ ଡକ୍ଟର ଡୋଲଫସ୍‌ଙ୍କର ଏକଛତ୍ର ଉତ୍କୋଚଶୀ ଶାସନ ପ୍ରଭୃତି ଦେଖା ଦେଇଥିଲା ।

ଏକତନ୍ତ୍ର ଓ ସାମ୍ୟବାଦ—

ୟୁରୋପର ଏହିସବୁ ନୂଆ ସାଧାରଣତନ୍ତ୍ର (Republic) ଶାସନଗୁଡ଼ିକୁ ମୋଟା ମୋଟି ଦୁଇଟି ଦାର୍ଶନିକ ମତ ଉପରେ ରଖା-ଯାଇଥାଏ; ଫାସିଜମ୍ (ବା ଏକତନ୍ତ୍ର-ବାଦ ?) ଏବଂ ସୋସାଲିଜମ୍ ବା ସାମ୍ୟବାଦ । କିନ୍ତୁ ଦୁଇଟି ଦର୍ଶନ ଭିତରେ ଫରକ ଏତିକି ଯେ ମୁସୋଲିନିଙ୍କ ଦ୍ୱାରା ଫାସିଜମ୍‌ର ପ୍ରତିଷ୍ଠା ହେବା ଆଗରୁ ଏ ନୀତିର ଦର୍ଶନ ବୋଲି କିଛି ନ ଥିଲା । ଇଟାଲୀର ସୁବିଖ୍ୟାତ ଔପନ୍ୟାସିକ ଓ ଯୋଦ୍ଧା ଡ୍ୟାନେନଜିଓ ( Gabriele'd Annunjio ) ୧୯୧୯ ମସିହାରେ ସ୍ୱଦେଶ ପ୍ରେମରେ ବିଗଳିତ ହୋଇ ଇଟାଲୀ ପାଇଁ ଫ୍ୟୁମ୍-(Free State of Fiume) ଦଖଲ କଲା ପରେ ତାଙ୍କର କଳ୍ପନା-ପ୍ରବଣ ଜାତୀୟତାବାଦ ଉପରେ ଜେଣ୍ଟିଲ୍ ପ୍ରଭୃତି ଦାର୍ଶନିକଗଣ ହେଗେଲ୍‌ଙ୍କର ଜାତୀୟତା ଯୁକ୍ତିକୁ ସହାୟ କରି ଫ୍ୟାସିଜମ୍‌କୁ ଯେନ ତେନ ଟିଏ ନୂଆ ଦର୍ଶନ ଠିଆ କରାଇଅଛନ୍ତି । ଅଥଚ ସାମ୍ୟବାଦର ଦର୍ଶନ ପୃଥିବୀର କୌଣସି ସ୍ଥାନରେ ସାମ୍ୟବାଦ ଶାସନର ସୂଚନା ଦେବା ଆଗରୁ କେଣ୍ଟ୍, ହେଗେଲ୍‌ଙ୍କଠାରୁ ମର୍କସ୍ ଏଞ୍ଜେଲ୍‌ସ୍ ଓ ଲେନିନ୍‌ଙ୍କ ପର୍ଯ୍ୟନ୍ତ ଶହ ଶହ ଦାର୍ଶନିକଙ୍କ ଦ୍ୱାରା ଗଢ଼ା ହୋଇ ଆସିଛି ଏବଂ ଏହାର ଜନ୍ମ କେବଳ ପହିଲେ ଗୋଟିଏ ଦାର୍ଶନିକ ତଥ୍ୟ ଭିତରେ, କିନ୍ତୁ ପରେ ନାନା ଚିନ୍ତା ଓ ପରୀକ୍ଷା ମଧ୍ୟରେ ପକାଇ ଏହି ତଥ୍ୟ ବା ଚିନ୍ତାକୁ କାମ ସଙ୍ଗରେ ମିଶାଇ ଦିଆ ଯାଇଅଛି ।

